ଇସ୍‌ଲାମ ଧର୍ମ ବିଷୟରେ ଜାଣିବା ପାଇଁ ଏହା ଏକ ଅତି ଉପାଦେୟ ପୁସ୍ତକ । ବେଦ, ବାଇବେଲ୍, କୁର୍‌ଆନ ଏବଂ ଅନ୍ୟାନ୍ୟ ଧର୍ମଗ୍ରନ୍ଥରୁ ବାଣୀ ଉଦ୍ଧାର କରି ଯେଉଁ ସାରଗର୍ଭକ ଓ ଗବେଷଣାତ୍ମକ ଆଲୋଚନା ଲେଖକ ସାଧାରଣ ଲୋକଙ୍କ ପଢ଼ିବା ପାଇଁ ଉପସ୍ଥାପନ କରିଛନ୍ତି, ତାଙ୍କର ଏହି ଉଦ୍ୟମ ପ୍ରଶଂସନୀୟ । ବହିଟି ଇସ୍‌ଲାମ ଧର୍ମ ବିଷୟରେ ପ୍ରଚାର କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟକୁ ମଧ୍ୟ ସମୃଦ୍ଧ କରିଛି । ଓଡ଼ିଆ ସାହିତ୍ୟରେ ଆଜିପର୍ଯ୍ୟନ୍ତ କେହି ଏପରି ଚେଷ୍ଟା କରିନାହାନ୍ତି । ଇସ୍‌ଲାମରେ ମାନବାଧିକାର ବୋଲି କିଛି ନାହିଁ ବୋଲି ଲୋକଙ୍କର ଯେଉଁ ଧାରଣା ରହିଛି, ତାହା ଲେଖକ ଭୁଲ୍ ବୋଲି ପ୍ରମାଣିତ କରିଛନ୍ତି ।

ମାନ୍ୟବର ଜଷ୍ଟିସ୍ ରାଧାକୃଷ୍ଣ ପାତ୍ର
ଚେୟାର୍‌ମ୍ୟାନ୍, ମାନବାଧିକାର କମିଶନ୍, ଓଡ଼ିଶା




ବହିଟି ପ୍ରତ୍ୟେକ ବ୍ୟକ୍ତି ପାଇଁ ଏକ ନିତ୍ୟ ପାରାୟଣ ଗ୍ରନ୍ଥ, ଯାହାକୁ ପ୍ରତିଦିନ ପଢ଼ିବା ଉଚିତ୍ ।

ଶ୍ରୀ ଅନ୍ନଦା ପ୍ରସାଦ ରାୟ
ସଭାପତି, ଉତ୍କଳ ସାହିତ୍ୟ ସମାଜ

# ଇସ୍‌ଲାମ ପରିଚୟ

ଏକ ଗବେଷଣାତ୍ମକ ଆଲୋଚନା

ଲେଖକ

**ଶକୀଲ୍ ଅହମଦ**






RESEARCH ACADEMY ଇକ୍‌ରା ରିସର୍ଚ୍ଚ ଏକାଡ଼େମୀ

# ଇସ୍‌ଲାମ ପରିଚୟ

ଲେଖକ :
ଶକୀଲ୍ ଅହମଦ



ପ୍ରକାଶକ :
ଇଫ୍‌ତେଖାର୍ ଆସିଫ୍ ଖାନ୍
ଇକ୍ରା ରିସର୍ଚ୍ଚ ଏକାଡ଼େମୀ
ଖ୍ରୀଷ୍ଟିୟାନ ଷ୍ଟ୍ରୀଟ୍, ସୁତାହାଟ
କଟକ - ୭୫୩ ୦୦୧

ଦ୍ୱିତୀୟ ସଂସ୍କରଣ : ୨୦୦୯

ଅକ୍ଷର ସଜ୍ଜା :
ସାହୁ କମ୍ପ୍ୟୁଟର୍ ୟୁନିଟ୍, କଟକ

ମୁଦ୍ରଣ :
ଜୁନୁପ୍ ଗ୍ରାଫିକ୍ସ, କଟକ

ମୂଲ୍ୟ : ଟ.୭୦.୦୦ ମାତ୍ର



# ISLAM PARICHAYA

**Author :**
Shakeel Ahmed



**Publisher :**
Iftekhar Asif Khan
**IQRA RESEARCH ACADEMY**
Christian Street, Sutahat
Cuttack - 753 001

**Second Edition : 2009**

**Type Set :**
Sahoo Computer Unit, Cuttack

**Printer :**
Junup Graphics, Cuttack

**Price : Rs.70.00 only**

ଅନନ୍ତ ଦୟାବାନ୍ ଅତୀବ କରୁଣାଶୀଳ ଅଲ୍ଲାହ୍‌ଙ୍କ ନାମରେ

# ମୁଖବନ୍ଧ

ଅଶାନ୍ତି, ଆତଙ୍କବାଦ ଏବଂ ସାମ୍ପ୍ରଦାୟିକତାବାଦର ଘନଘଟା ମଧ୍ୟରେ ସତତ ସନ୍ତୁଳିତ ଭାରତ ବର୍ତ୍ତମାନ ଘୋର ଅସ୍ଥିରତା ମଧ୍ୟରେ ଗତି କରୁଛି । ଚାରିଆଡ଼େ ଚରମ ବିଶୃଙ୍ଖଳା । ମଣିଷ ରକ୍ତ ପାଣି ପରି ନାଳ-ନର୍ଦ୍ଦମାରେ ବୋହିଯାଉଛି । ମନ୍ଦିର, ମସ୍‌ଜିଦ୍ ଏବଂ ଗୀର୍ଜାର ଚଟାଣ ମଧ୍ୟ ରକ୍ତରଞ୍ଜିତ ।

ଧର୍ମ ନାମରେ ଗଣସଂହାର, ନିରୀହ ଜନତା, ବୃଦ୍ଧ, ମହିଳା ଓ ଶିଶୁମାନଙ୍କର ନିର୍ମମ ହତ୍ୟା, ସାମ୍ପ୍ରଦାୟିକ ହିଂସାଦ୍ୱାରା ମନଇଚ୍ଛା ନରସଂହାର, ଲୁଣ୍ଠନ ଓ ଧର୍ଷଣ ଏକ କୁତ୍ସିତ ମନୋଭାବର ପରିଚାୟକ । କୌଣସି ଦିବ୍ୟଗ୍ରନ୍ଥ ଏଭଳି ଅତ୍ୟାଚାର କରିବାର ଶିକ୍ଷା ଦିଏନାହିଁ । ଯେଉଁ ବ୍ୟକ୍ତି ଏ ପ୍ରକାରର ଜଘନ୍ୟ କାର୍ଯ୍ୟ କରେ, ସେ କଦାଚିତ କୌଣସି ଧର୍ମ ପାଳନ କରେନାହିଁ, ତା'ର ନାଁ 'ଅମର' ହେଉ, 'ଆକବର' ହେଉ ବା 'ଆଣ୍ଟୋନୀ' ହେଉ ।

ସମ୍ପ୍ରତି ଇସ୍‌ଲାମ ଏକ ଅମାନବୀୟ ଧର୍ମ ରୂପେ ଚର୍ଚ୍ଚିତ, ଯଦିଓ ଏହା ଏକ ବିଶୁଦ୍ଧ ମାନବବାଦୀ ଧର୍ମ । ମୁସଲିମ୍ ଓ ଅଣମୁସଲିମ୍ ଜନସମାଜରେ ଏହି ଧର୍ମ ବିଷୟରେ ନାନାପ୍ରକାର ଭ୍ରମ ଧାରଣା ବଦ୍ଧମୂଳ ହୋଇ ରହିଛି । ପ୍ରକୃତରେ ଇସ୍‌ଲାମ କ'ଣ, ଏହା ଜାଣିବା ପାଇଁ ଅନେକଙ୍କର ଆଗ୍ରହ ଥିଲେ ସୁଦ୍ଧା ଉପଯୁକ୍ତ ଇସ୍‌ଲାମୀ ସାହିତ୍ୟର ଅଭାବ ଯୋଗୁଁ ସେମାନେ ଇସ୍‌ଲାମର ପ୍ରକୃତ ସ୍ୱରୂପ ଜାଣିପାରନ୍ତି ନାହିଁ । ବିଶେଷତଃ ଓଡ଼ିଆ ଭାଷାରେ ଇସ୍‌ଲାମୀ ସାହିତ୍ୟ ଅତିମାତ୍ରାରେ ନଗଣ୍ୟ କହିଲେ ଚଳେ । ଆମ ଓଡ଼ିଶାର ପ୍ରାୟ ଶତକଡ଼ା ୯୭.୩ଭାଗ ଅଧିବାସୀ ଅନ୍ୟ ଧର୍ମାବଲମ୍ବୀ । ରାଜ୍ୟର ମାତ୍ର ୨.୭ଭାଗ ମୁସଲମାନମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ମାତୃଭାଷା ଓଡ଼ିଆ । ତେଣୁ, ଓଡ଼ିଆ ଭାଷାରେ ଇସ୍‌ଲାମୀ ସାହିତ୍ୟର ନିତାନ୍ତ ଆବଶ୍ୟକତା ରହିଛି । ଏହି ପୁସ୍ତକଟିକୁ ଲେଖିବାର ଉଦ୍ଦେଶ୍ୟ ହେଉଛି ଯେ, ସମସ୍ତେ ଇସ୍‌ଲାମ ବିଷୟରେ ଜାଣନ୍ତୁ । ମୁସଲମାନମାନେ ନିଜ ଧର୍ମକୁ ଭଲରୂପେ ବୁଝିପାରିଲେ, ହୁଏତ ଅନୁଚିତ ଆଚରଣରୁ ବିରତ ରହିବେ ଏବଂ ଅନ୍ୟ ଧର୍ମାବଲମ୍ବୀ ଭାଇଭଉଣୀଙ୍କ ମନରୁ ଇସ୍‌ଲାମ ବିଷୟରେ ଥିବା ବିଭିନ୍ନ ସନ୍ଦେହ ଦୂର ହୋଇପାରିବ ।

ପୁସ୍ତକଟି ଏକ ଭିନ୍ନ ସ୍ୱାଦର ଇସ୍‌ଲାମୀ ସାହିତ୍ୟ । ଧର୍ମର କେତେକ ସିଦ୍ଧାନ୍ତକୁ ବୁଝାଇବା ପାଇଁ କୁର୍‌ଆନ ବ୍ୟତୀତ ମୁଁ ବେଦ ଓ ବାଇବେଲର ମଧ୍ୟ ସହାୟତା ନେଇଛି

ଯାହା କେତେକ ମୁସଲମାନଙ୍କୁ ଅସ୍ୱାଭାବିକ ଲାଗିପାରେ । କିନ୍ତୁ ଏହାର କେତୋଟି କାରଣ ରହିଛି ।

ପ୍ରଥମତଃ ଏହି ପୁସ୍ତକଟି କେବଳ ମୁସଲମାନମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଅନ୍ୟ ଧର୍ମାବଲମ୍ବୀ ଭାଇଭଉଣୀମାନଙ୍କୁ ମଧ୍ୟ ସମାନ ଭାବରେ ଇସ୍‌ଲାମ ସହ ପରିଚିତ କରାଇବା ଏହାର ଉଦ୍ଦେଶ୍ୟ । ସାଧାରଣତଃ ପ୍ରତ୍ୟେକ ବ୍ୟକ୍ତିର ନିଜ ଧର୍ମ ପ୍ରତି ସ୍ୱାଭାବିକ ଅନୁରକ୍ତି ଥାଏ ଏବଂ ନିଜ ଧର୍ମଗ୍ରନ୍ଥରେ ଥିବା ଶିକ୍ଷାଗୁଡ଼ିକ ତା' ପାଇଁ ଅନ୍ୟ ଗ୍ରନ୍ଥର ଶିକ୍ଷା ଅପେକ୍ଷା ଅଧିକ ଗ୍ରହଣୀୟ ହୋଇଥାଏ । ତେଣୁ, ଈଶ୍ୱର ଗ୍ରନ୍ଥଧାରୀମାନଙ୍କୁ ଉପଦେଶ ଦେବାର ଶୈଳୀ କୁର୍‌ଆନରେ ବର୍ଣ୍ଣନା କରି କହିଛନ୍ତି :

> "(ସେମାନଙ୍କୁ) କୁହ—ହେ ଗ୍ରନ୍ଥଧାରୀମାନେ ! ଆସ ଏପରି ଏକ (ନ୍ୟାୟୋଚିତ) କଥା ପ୍ରତି ଯାହା ଆମ ଓ ତୁମ ମଧ୍ୟରେ ସମାନ ଭାବରେ ରହିଛି ।"

କୁର୍‌ଆନ ୩ : ୬୪

ଅର୍ଥାତ୍, ଯେଉଁ ଶିକ୍ଷା ପରସ୍ପରର ଗ୍ରନ୍ଥରେ ସମାନ ଭାବରେ ରହିଛି, ଅନ୍ତତଃ ସେଗୁଡ଼ିକ ଗ୍ରହଣ କର । କିନ୍ତୁ ଯେଉଁ ଶିକ୍ଷା ସମାନ ଭାବରେ ବିଭିନ୍ନ ଗ୍ରନ୍ଥରେ ରହିଛି ତାହା ସେହି ଗ୍ରନ୍ଥମାନଙ୍କରୁ ଉଦ୍ଧାର ନ କରି କିପରି ପ୍ରମାଣିତ କରାଯାଇପାରିବ ? ଏଥିପାଇଁ ବିଭିନ୍ନ ଧର୍ମଗ୍ରନ୍ଥଗୁଡ଼ିକର ସହାୟତା ନିଆଯାଇଛି ।

ଦ୍ୱିତୀୟତଃ, ଇସ୍‌ଲାମ ଏକ ଆଦି ଧର୍ମ । ମହାମାନ୍ୟ ମୁହମ୍ମଦ କୌଣସି ନୂତନ ଧର୍ମର ସନ୍ଦେଶ ବାହକ ନୁହଁନ୍ତି କିମ୍ବା କୁର୍‌ଆନ କୌଣସି ଅଦ୍ଭୁତ ଶିକ୍ଷା ଆଣି ନାହିଁ । କୁର୍‌ଆନ ପୂର୍ବ ଦିବ୍ୟଶିକ୍ଷାଗୁଡ଼ିକର ପୁନଃସ୍ଥାପନ କରିଛି, ଯାହାକି କାଳକ୍ରମେ ନାନା କୁସଂସ୍କାର ଓ ଅନ୍ଧବିଶ୍ୱାସ ଦ୍ୱାରା କଳୁଷିତ ହୋଇଯାଇଥିଲା । ଏହା ଅପମିଶ୍ରିତ ହୋଇଯାଇଥିବା ଶିକ୍ଷାଗୁଡ଼ିକୁ ସଂଶୋଧନ କରି ଦିବ୍ୟଧର୍ମକୁ ପୁନଃସ୍ଥାପିତ କରିଛି । ଧର୍ମର ଏହି ତତ୍ତ୍ୱଟିକୁ ପ୍ରମାଣିତ କରିବା ପାଇଁ ବେଦ ଓ ବାଇବେଲରେ ଥିବା ଇସ୍‌ଲାମୀୟ ଶିକ୍ଷାଗୁଡ଼ିକୁ ଉଦ୍ଧାର କରିବାର ଆବଶ୍ୟକତା ପଡ଼ିଲା; କିନ୍ତୁ ସତ୍ୟ, ନ୍ୟାୟ, ଦୟା, କ୍ଷମା, ପ୍ରେମ ଓ ପରୋପକାର ଭଳି ଇସ୍‌ଲାମୀୟ ନୀତିଶିକ୍ଷାଗୁଡ଼ିକୁ ପ୍ରମାଣିତ କରିବା ପାଇଁ ଅନ୍ୟ ଧର୍ମଗ୍ରନ୍ଥମାନଙ୍କର ସହାୟତାର କୌଣସି ଆବଶ୍ୟକତା ନାହିଁ, କାରଣ ଏଗୁଡ଼ିକରେ କୌଣସି ମତଭେଦ ନାହିଁ ।

ତୃତୀୟତଃ, ଆମ ଦେଶ ଏକ ଧର୍ମନିରପେକ୍ଷ ରାଷ୍ଟ୍ର । ବିବିଧତା ମଧ୍ୟରେ ଏକତା ଏହାର ଅନ୍ୟତମ ବୈଶିଷ୍ଟ୍ୟ । ଭାରତୀୟ ଜନତା ବିଭିନ୍ନ ଧର୍ମ ମତବାଦ ଅନୁସରଣ କରୁଥିବା ସତ୍ତ୍ୱେ ପରସ୍ପର ମିଳିମିଶି ସୌହାର୍ଦ୍ଦ୍ୟପୂର୍ଣ୍ଣ ଜୀବନଯାପନ କରନ୍ତି ଏବଂ ସୁଖଦୁଃଖରେ ପରସ୍ପରକୁ ସାହାଯ୍ୟ ସହଯୋଗ ମଧ୍ୟ କରନ୍ତି । ବିଭିନ୍ନ

ଗ୍ରନ୍ଥଗୁଡ଼ିକରେ ସମାନ ଭାବରେ ରହିଥିବା ଶିକ୍ଷାଗୁଡ଼ିକ ସେମାନଙ୍କୁ ଦିବ୍ୟଗ୍ରନ୍ଥମାନଙ୍କ ମଧ୍ୟରେ ଥିବା ଅନ୍ତରଙ୍ଗ ସମ୍ପର୍କକୁ ବୁଝିବାରେ ସାହାଯ୍ୟ କରିବ ଏବଂ ଜାତୀୟ ଐକ୍ୟ ଏବଂ ବିଶ୍ୱଭ୍ରାତୃତ୍ୱର ପ୍ରତିଷ୍ଠା କ୍ଷେତ୍ରରେ ମଧ୍ୟ ସହାୟକ ହୋଇପାରିବ । ଏହା ଫଳରେ ବିଭିନ୍ନ ସମ୍ପ୍ରଦାୟ ପରସ୍ପରର ନିକଟବର୍ତ୍ତୀ ହୋଇପାରିବେ ଏବଂ ସାମ୍ପ୍ରଦାୟିକ ସଦ୍ଭାବ ସୁଦୃଢ଼ ହେବ ।

ଏହି ପୁସ୍ତକଟିରେ ମୁଁ ପାଠକମାନଙ୍କୁ ବୁଝାଇବା ପାଇଁ ଚେଷ୍ଟା କରିଛି ଯେ, ଇସ୍‌ଲାମ କ'ଣ ଏବଂ ଏହାର ନୀତି-ନିୟମଗୁଡ଼ିକ କିପରି ସାର୍ବଜନୀନ ସତ୍ୟ ଉପରେ ପର୍ଯ୍ୟବେସିତ । ମୁଁ ଏହି ଧର୍ମର ବାସ୍ତବିକତା, ଏହାର ଶାଶ୍ୱତ ବିଧି, ସ୍ୱାର୍ଥରହିତ ବିଚାରଧାରା ଏବଂ ମାନବିକ ମୂଲ୍ୟବୋଧ ଉପରେ ଆଲୋକପାତ କରିଛି । ଏହାବ୍ୟତୀତ ଇସ୍‌ଲାମ ପ୍ରଦାନ କରୁଥିବା ମାନବାଧିକାରଗୁଡ଼ିକ ଉପରେ ମଧ୍ୟ ଆଲୋଚନା କରିଛି ଯାହା ଧର୍ମର ଏକ ପ୍ରମୁଖ ତଥା ଅବିଚ୍ଛେଦ୍ୟ ଅଙ୍ଗ ।

ଇସ୍‌ଲାମର ସମସ୍ତ ଶିକ୍ଷାଗୁଡ଼ିକ ଆଲୋଚନା ପରିସରକୁ ଆସିପାରିନାହିଁ । କେବଳ ଏହାର ମୌଳିକ ନୀତି-ନିୟମ ଉପରେ ଆଲୋଚନା କରାଯାଇଛି । ପାଠକମାନଙ୍କୁ ଇସ୍‌ଲାମୀୟ ଜୀବନଶୈଳୀର ଏକ ସଂକ୍ଷିପ୍ତ ପରିଚୟ ଦେବା ପୁସ୍ତକଟିର ଉଦ୍ଦେଶ୍ୟ । ସମୟର ଆବଶ୍ୟକତା ଯୋଗୁଁ ନିଜ କର୍ତ୍ତବ୍ୟବୋଧର ପ୍ରବଳ ଚାପରେ ମୁଁ ଏହି ଗୁରୁଦାୟିତ୍ୱ ବହନ କରିଛି । ଅନ୍ୟ ଧର୍ମାବଲମ୍ବୀ କୌଣସି ଭାଇଭଉଣୀଙ୍କ ମନକୁ ଟିକିଏ ମଧ୍ୟ କଷ୍ଟ ଦେବା ମୁଁ ପସନ୍ଦ କରେନାହିଁ । ତଥାପି ଯଦି ମୋ ଲେଖା ଦ୍ୱାରା କାହାରି ମନକୁ ଆଘାତ ପହଞ୍ଚୁଥାଏ, ତେବେ ମୋତେ କ୍ଷମା କରିବେ । ଆଶା କରେ, ପୁସ୍ତକଟି ଇସ୍‌ଲାମକୁ ବୁଝିବାରେ ଏବଂ ସାମ୍ପ୍ରଦାୟିକ ସଦ୍ଭାବର ଉନ୍ନତି କ୍ଷେତ୍ରରେ ସହାୟକ ହେବ ।



ଶକୀଲ ଅହମଦ

କଟକ
୨୬ ନଭେମ୍ବର, ୨୦୦୮

(ଶକୀଲ ଅହମଦ)
**Phone No. (M)-9861269764**

ପାଠକ-ପାଠିକାମାନଙ୍କୁ ବିନମ୍ର ଅନୁରୋଧ, ସେମାନେ ମହାନ୍ ଗ୍ରନ୍ଥମାନଙ୍କର ପବିତ୍ରତା ରକ୍ଷା କରିବେ ।

ଲେଖକ

**S.M.A. Quasmi,** O.E.S. (Retd.)
(M.A. Pol. Sc., M.A. Urdu) AMU
Fomer Head, Dept. of Urdu & Persian,
Ravenshaw College, Cuttack
Former Secretary, Orissa Urdu Academy
Former Special Officer, Governer of Orissa
Member, All India Muslim Personal Law Board
Kesharpur, Cuttack-753001
Ph.-0671-2361052

سید منظور احمد قاسمی - او۔ای۔ایس (ریٹائرڈ)
(ایم۔اے۔ پولیٹیکل سائنس، ایم۔اے۔ اردو)
کیسر پور - کٹک - ۷۵۳۰۰۱ (اڑیسہ)
فون:- ۲۳۶۱۰۵۲ (۰۶۷۱)

---

**ମୌଲାନା ସୟଦ ମଞ୍ଜୁର୍ ଅହମଦ କାସମୀ**
ପ୍ରାକ୍ତନ ଅଧ୍ୟାପକ, ରେଭେନ୍ସା ମହାବିଦ୍ୟାଳୟ
ପରାମର୍ଶଦାତା, ଇକ୍‌ରା ରିସର୍ଚ୍ଚ ଏକାଡ଼େମୀ

ଜନାବ୍ ଶକୀଲ ଅହମଦଙ୍କର ''ଇସ୍‌ଲାମ ପରିଚୟ' ପୁସ୍ତକଟି ଇସ୍‌ଲାମର ଏକ ସୁନ୍ଦର ପରିଚୟ ପ୍ରଦାନ କରିଛି । ସରଳ ଓଡ଼ିଆ ଭାଷାରେ ଲେଖକ ଧର୍ମର ତତ୍ତ୍ୱ ଓ ମୌଳିକ ନୀତିନିୟମଗୁଡ଼ିକୁ ପାଠକମାନଙ୍କୁ ବୁଝାଇବାକୁ ଚେଷ୍ଟା କରିଛନ୍ତି । ପୁସ୍ତକଟିର ବିଶେଷତ୍ୱ ହେଉଛି ଯେ, ଏହା ଏକ ଗବେଷଣାଧର୍ମୀ ପୁସ୍ତକ, ଯେଉଁଥିରେ ବିଭିନ୍ନ ଧର୍ମଗ୍ରନ୍ଥର ସହାୟତାରେ ଇସ୍‌ଲାମର ତତ୍ତ୍ୱଗୁଡ଼ିକୁ ବୁଝାଇବାର ପ୍ରୟାସ କରାଯାଇଛି । ଏହା ଓଡ଼ିଆଭାଷୀ ଜନସାଧାରଣଙ୍କୁ ଇସ୍‌ଲାମର ଶିକ୍ଷାଗୁଡ଼ିକୁ ସହଜରେ ବୁଝିବାରେ ସାହାଯ୍ୟ କରିବ ଏବଂ ବିଭିନ୍ନ ସମ୍ପ୍ରଦାୟଗୁଡ଼ିକୁ ପରସ୍ପରର ନିକଟବର୍ତ୍ତୀ କରିପାରିବ ।

ଏହାବ୍ୟତୀତ ଇସ୍‌ଲାମରେ ଥିବା ମାନବବାଦ ଓ ମାନବାଧିକାର ଉପରେ ଆଲୋଚନା ପୁସ୍ତକଟିର ଅନ୍ୟତମ ଆକର୍ଷଣ । ଇସ୍‌ଲାମ ଏକ ମାନବବାଦୀ ଧର୍ମ ଏବଂ ସତ୍ୟ, ନ୍ୟାୟ, ଦୟା, ପ୍ରେମ ଓ ପରୋପକାର ଆଦି ଏହାର ମୌଳିକ ଶିକ୍ଷା । କୌଣସି ପ୍ରକାର ଅନ୍ୟାୟ ବା ଆତଙ୍କବାଦର ଇସ୍‌ଲାମରେ ଆଦୌ ସ୍ଥାନ ନାହିଁ । ସାମ୍ପ୍ରତିକ ପରିସ୍ଥିତିରେ ଏହି ପୁସ୍ତକଟି ଇସ୍‌ଲାମ ବିଷୟରେ ଥିବା ଅନେକ ଭ୍ରମଧାରଣାଗୁଡ଼ିକୁ ଦୂର କରିବା ସହ ସାମ୍ପ୍ରଦାୟିକ ସଦ୍‌ଭାବର ଉନ୍ନତି କ୍ଷେତ୍ରରେ ମଧ୍ୟ ସହାୟକ ହେବ ବୋଲି ମୋର ଆଶା ।

ସୟ୍ୟଦ୍ ମଂଜୁର୍ ଅହମଦ୍ କାସ୍ମୀ

(ସୟଦ ମଞ୍ଜୁର୍ ଅହମଦ କାସମୀ)

***Mufti Abdur Rahman Nadvi***
Sadrulmudaris
MADRASA ISLAMIA NOORUL ULOOM
Nima Sahi, Po.-Buxi Bazar, Cuttack-753001
Phone-0671-2423399
Cell-9861390837



مفتی عبد الرحمن الندوی
صدر المدرس مدرسہ اسلامیہ نور العلوم
نیما ساہی، پوسٹ بخشی بازار، کٹک-۷۵۳۰۰۱ (اڑیسہ)

---

ମୁଫତି ଅବଦୁର ରହମାନ୍ ନଦୱି
ମହାସଚିବ, ମଜଲିସୁଲ୍ ଉଲମା, ଓଡ଼ିଶା
ପରାମର୍ଶଦାତା, ଇକ୍‌ରା ରିସର୍ଚ୍ଚ ଏକାଡ଼େମୀ

ଇସ୍‌ଲାମକୁ ଭଲ ରୂପେ ବୁଝିନଥିବା ଯୋଗୁଁ ମୁସଲିମ୍ ଓ ଅଣମୁସଲିମ୍ ଜନସମାଜରେ ଏହା ବିଷୟରେ ନାନାପ୍ରକାର ଭ୍ରମଧାରଣା ସୃଷ୍ଟି ହୋଇଛି, ଯାହାକୁ ଦୂର କରିବା ପାଇଁ ଲେଖକ ନିରନ୍ତର ପ୍ରୟାସ କରିଆସୁଛନ୍ତି । ଓଡ଼ିଆଭାଷୀ ଜନସାଧାରଣଙ୍କୁ ଇସ୍‌ଲାମର ପରିଚୟ ଦେବାପାଇଁ ଶକୀଲ ଭାଇଙ୍କ ଲିଖିତ ଏହି ଗବେଷଣାଧର୍ମୀ ପୁସ୍ତକଟି ଏକ ଅତି ପ୍ରଶଂସନୀୟ ଉଦ୍ୟମ । ମୁଁ ଏଥିପାଇଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ପୁସ୍ତକଟି ଉଭୟ ମୁସଲିମ୍ ଓ ଅଣମୁସଲିମ୍ ଭାଇ-ଭଉଣୀମାନଙ୍କ ପାଇଁ ଏକ ଅତି ଉପାଦେୟ ପୁସ୍ତକ । ଏଥିରେ ଇସ୍‌ଲାମର ସିଦ୍ଧାନ୍ତ, ମୌଳିକ ନୀତିନିୟମ ଓ ମୁଖ୍ୟ ବୈଶିଷ୍ଟ୍ୟଗୁଡ଼ିକ ଉପରେ ସୁନ୍ଦର ଭାବରେ ଆଲୋଚନା କରାଯାଇଛି । ଏହାବ୍ୟତୀତ ଏକ ସୁସ୍ଥ ଓ ଦୁର୍ନୀତିମୁକ୍ତ ସମାଜ ଗଠନ ପାଇଁ ତଥା ବିଭିନ୍ନ ମାନବସମସ୍ୟାର ସମାଧାନ ପାଇଁ ଇସ୍‌ଲାମର ଭୂମିକା ଉପରେ ମଧ୍ୟ ଲେଖକ ଆଲୋଚନା କରିଛନ୍ତି । ପୁସ୍ତକଟି ପାଠକମାନଙ୍କୁ ଇସ୍‌ଲାମର ପ୍ରକୃତ ଶିକ୍ଷା ବିଷୟରେ ଅବଗତ କରାଇବା ସହିତ ସେମାନଙ୍କ ମନରୁ ଅନେକ ପ୍ରଶ୍ନବାଚୀ ଦୂର କରିପାରିବ ।

ଇସ୍‌ଲାମ ଏକ ମାନବବାଦୀ ଧର୍ମ ଯାହାର ପ୍ରଚାର ଓ ପ୍ରସାର ପାଇଁ ପୃଥିବୀପୃଷ୍ଠରେ ଲକ୍ଷାଧିକ ମହାମାନ୍ୟ ବାର୍ତ୍ତାବହ ପ୍ରେରିତ ହୋଇଛନ୍ତି । ସେମାନେ ସମସ୍ତେ ମନୁଷ୍ୟ ଥିଲେ ଏବଂ ମଣିଷକୁ ପ୍ରକୃତ ମଣିଷ କରି ଗଢ଼ିବା ପାଇଁ ନିଯୁକ୍ତି ହୋଇଥିଲେ ।

ମନୁଷ୍ୟ ସଂସାରର ସର୍ବଶ୍ରେଷ୍ଠ ପ୍ରାଣୀ ଏବଂ ସମଗ୍ର ମାନବଜଗତ ଗୋଟିଏ ପରିବାର । ସମସ୍ତଙ୍କର ପାଳନକର୍ତ୍ତା ଜଣେ ଏବଂ ପିତା ମଧ୍ୟ ଜଣେ । ତେଣୁ ମଣିଷ ମଣିଷର ମୂଲ୍ୟ ବୁଝିବା ଉଚିତ୍ । ପାରସ୍ପରିକ ସ୍ନେହ ଓ ପ୍ରେମରେ ଉନ୍ନତି ପାଇଁ ପ୍ରଯତ୍ନ କରିବା ସହ ମାନବଜଗତର କଲ୍ୟାଣ ପାଇଁ ସର୍ବଦା ଚେଷ୍ଟା କରିବା ଉଚିତ୍ । ମୁଁ ପ୍ରାର୍ଥନା କରୁଛି ଯେ, ଅଲ୍ଲାହ୍ ଶକୀଲ ଭାଇଙ୍କ ଶ୍ରମକୁ ସ୍ୱୀକାର କରନ୍ତୁ । ଆମିନ୍ ।

ଅବଦୁର ରହମାନ

(ଅବଦୁର ରହମାନ୍ ନଦୱି)

*Maulana Sayed Abu Daud Quasmi*
Mudarris (Arabic), Madrasa Sultania
Buxi Bazar, Cuttack
Mohtamim, Jamia Rashidia Riazul Uloom, Sungra
Mohtamim, Madrasa Islamia Misbahul Uloom,
Kesharpur, Cuttack
Cell-9437136708

(مولانا) سید ابوداؤد قاسمی
مہتمم، جامعہ رشیدیہ ریاض العلوم سونگڑہ
پوسٹ، کوڈ، ضلع، کٹک (اڑیسہ)

---

ମୌଲାନା ସୟଦ୍ ଅବୁ ଦାଉଦ କାସ୍‌ମୀ
ଅଧ୍ୟାପକ (ଆରବୀ), ମଦରସା ସୁଲତାନିୟା, କଟକ
ପରାମର୍ଶଦାତା, ଇକ୍‌ରା ରିସର୍ଚ୍ଚ ଏକାଡ଼େମୀ, କଟକ

ଇସ୍‌ଲାମ ସ୍ରଷ୍ଟାଙ୍କ ଦ୍ୱାରା ନିର୍ଦ୍ଧାରିତ ଜୀବନପଥ । ଏହା ଏକ ନ୍ୟାୟପ୍ରିୟ ଓ ମାନବବାଦୀ ଧର୍ମ ଏବଂ ମାନବ ସମାଜର ଶାନ୍ତି ଓ ସଫଳତା ଏହାର ମୂଳ ଲକ୍ଷ । କିନ୍ତୁ କେତେକ ପାଶ୍ଚାତ୍ୟ ସମାଲୋଚକମାନଙ୍କର ଇସ୍‌ଲାମ ବିରୋଧି ଅପପ୍ରଚାର ଯୋଗୁଁ ସାଧାରଣ ଜନତା ଇସ୍‌ଲାମକୁ ଭୁଲ୍ ବୁଝୁଛନ୍ତି, ଯାହା ଫଳରେ ସେମାନଙ୍କ ମନରେ ଏହି ଧର୍ମ ବିଷୟରେ ଅନେକ ଭ୍ରମଧାରଣା ସୃଷ୍ଟି ହୋଇଯାଇଛି । ଅନେକ ମୁସଲିମ୍ ଓ ଅଣମୁସଲିମ୍ ଭାଇଭଉଣୀ ଇସ୍‌ଲାମ ସହ ଭଲ ରୂପେ ପରିଚିତ ନୁହଁନ୍ତି । ତେଣୁ ଏପରି ଏକ ପୁସ୍ତକର ଆବଶ୍ୟକତା ଥିଲା ଯାହାକି ଓଡ଼ିଆ ଭାଷୀ ଜନସାଧାରଣଙ୍କୁ ଇସ୍‌ଲାମର ପ୍ରକୃତ ପରିଚୟ ପ୍ରଦାନ କରିପାରିବ । ଏହି ଆବଶ୍ୟକତା ପୂରଣ କରିବା ପାଇଁ ଜନାବ ଶକୀଲ ଅହମଦ ଅକ୍ଳାନ୍ତ ପରିଶ୍ରମ କରି 'ଇସ୍‌ଲାମ ପରିଚୟ' ପୁସ୍ତକଟି ରଚନା କରିଛନ୍ତି, ଯେଉଁଥିପାଇଁ ମୁଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଛି । ଏହି ପୁସ୍ତକଟି ପଢ଼ିଲେ ଜଣେ ସାଧାରଣ ବ୍ୟକ୍ତି ଇସ୍‌ଲାମକୁ ସହଜରେ ବୁଝିପାରିବ ।

ଆଜି ଦେଶ ଓ ଜାତିର ଶତ୍ରୁମାନେ ଧର୍ମ ନାମରେ ହିଂସା ଓ ବିଦ୍ୱେଷ ସୃଷ୍ଟି କରି ଭାରତର ଏକତା ଓ ଅଖଣ୍ଡତାକୁ ବିପନ୍ନ କରିବାକୁ ଚେଷ୍ଟା କରୁଛନ୍ତି । ଏଭଳି ଏକ ସ୍ୱର୍ଶକାତର ସମୟରେ ଲେଖକ ବିଭିନ୍ନ ଧର୍ମାବଲମ୍ବୀମାନଙ୍କୁ ଏକତା ସୂତ୍ରରେ ବାନ୍ଧି ରଖିବାର ଯେଉଁ ପ୍ରୟାସ କରିଛନ୍ତି, ତାହା ପ୍ରଶଂସନୀୟ । ଆଶା କରେ ପୁସ୍ତକଟି ପାଠକମାନଙ୍କର ଜ୍ଞାନ ବୃଦ୍ଧି କରିବା ସହିତ ସେମାନଙ୍କର ଉଚିତ ମାର୍ଗଦର୍ଶନ କରିବାରେ ସହାୟକ ହେବ ।

ସୟଦ୍ ଅବୁଦାଉଦ୍

(ସୟଦ୍ ଅବୁଦାଉଦ୍)

MOBILE - 9437614713
9437226680

CODE - 0671 PHONE- 2350406

الجامعة الاسلامية
مركز العلوم سونگره

JAMIA ISLAMIA
MARKAZUL-ULOOM, SUNGRA

PO: KOOD, DIST: CUTTACK
ORISSA ( INDIA), PIN-754221.

ମୁଫତି ସୟଦ ନକିବୁଲ ଅମୀନ ବରକୀ କାସମୀ
ମୋହତମୀମ୍, ମରକଜୁଲ୍ ଉଲୁମ୍, ସୁଙ୍ଗଡ଼ା
ମହାସଚିବ, ଜମିଅତୁଲ୍ ଉଲମା, ଓଡ଼ିଶା
ପରାମର୍ଶଦାତା, ଇକ୍ରା ରିସର୍ଚ୍ଚ ଏକାଡ଼େମୀ

ଇସ୍‌ଲାମ ମନୁଷ୍ୟର ପ୍ରାକୃତିକ ଧର୍ମ । ମାନବଜଗତ ପାଇଁ ଏହା ଏକ ଆଦର୍ଶ ଜୀବନଶୈଳୀ ଏବଂ ସମଗ୍ର ବିଶ୍ୱବାସୀଙ୍କ ପାଇଁ ଉଦ୍ଦିଷ୍ଟ । ଏହି ସତ୍ୟକୁ ପ୍ରମାଣିତ କରିବାକୁ ଯାଇ ଜନାବ୍ ଶକୀଲ ଅହମଦ ''ଇସ୍‌ଲାମ ପରିଚୟ'' ପୁସ୍ତକଟି ଲେଖି ଧନ୍ୟବାଦର ପାତ୍ର ହୋଇପାରିଛନ୍ତି । ଲେଖକ ଏହି ପୁସ୍ତକରେ ଖୁବ୍ ସୁନ୍ଦର ଓ ସରଳ ଓଡ଼ିଆ ଭାଷାରେ ଇସ୍‌ଲାମ ଧର୍ମର ସାଧାରଣ ନୀତିନିୟମଗୁଡ଼ିକ ଉପରେ ଆଲୋକପାତ କରି ଏହି ଧର୍ମ ବିଷୟରେ ସର୍ବସାଧାରଣରେ ଥିବା ଭ୍ରମଧାରଣାଗୁଡ଼ିକୁ ଦୂର କରିବାକୁ ଚେଷ୍ଟା କରିଛନ୍ତି । ଇସ୍‌ଲାମ ସମସ୍ତଙ୍କୁ ସମାନତାର ଅଧିକାର ପ୍ରଦାନ କରି ପୃଥିବୀବାସୀଙ୍କ ମଧ୍ୟରେ ଥିବା କଳା-ଗୋରା, ଉଚ୍ଚ-ନୀଚ ଓ ସାନ-ବଡ଼ର ଭେଦଭାବକୁ ଦୂର କରି ସ୍ନେହ, ଶ୍ରଦ୍ଧା, ଶାନ୍ତି ଓ ପ୍ରେମ ପ୍ରତିଷ୍ଠା କରିଛି । ହିନ୍ଦୁ ହୁଅନ୍ତୁ ବା ଖ୍ରୀଷ୍ଟିୟାନ, ଇସ୍‌ଲାମ ସମସ୍ତଙ୍କ ସହ ସୁସମ୍ପର୍କ ସ୍ଥାପନ କରିବା ପାଇଁ ଆଦେଶ ଦେଇଛି । କେବଳ ମାନବସମାଜ ନୁହେଁ, ବରଂ ଇସ୍‌ଲାମ ପଶୁପକ୍ଷୀ, ଜୀବଜନ୍ତୁ ଏପରିକି ସାମାନ୍ୟ ପିମ୍ପୁଡ଼ିଟିକୁ ମଧ୍ୟ ଅନ୍ୟାୟରେ ହତ୍ୟା କରିବା ନିଷିଦ୍ଧ କରିଛି ।

ଜନାବ ଶକୀଲ ଅହମଦ ଇସ୍‌ଲାମ ଉପରେ ଗବେଷଣା କରି ପବିତ୍ର କୁରଆନ୍ ଶରିଫ, ହଦିସ୍ ଶରିଫ୍, ବେଦ, ବାଇବଲ ଓ ପୁରାଣରୁ ଧର୍ମର ମୂଳନୀତିନିୟମଗୁଡ଼ିକୁ ଉଦ୍ଧାର କରି ଇସ୍‌ଲାମ ଯେ ପୃଥିବୀର ସର୍ବପୁରାତନ ଜୀବନଶୈଳୀ, ଏହା ପ୍ରମାଣିତ କରିଛନ୍ତି । ମୁଁ ପ୍ରାର୍ଥନା କରୁଛି ଯେ, ଇସ୍‌ଲାମ ବିଷୟରେ ଥିବା ଭ୍ରମଧାରଣା ଦୂର କରିବା ପାଇଁ ଏବଂ ସାମ୍ପ୍ରଦାୟିକ ସଦ୍‌ଭାବରେ ଉନ୍ନତି ଆଣିବା ପାଇଁ ଲେଖକଙ୍କର ପ୍ରଚେଷ୍ଟା ଫଳବତୀ ହେଉ । ଆଶା କରେ ପୁସ୍ତକଟି ଇସ୍‌ଲାମକୁ ବୁଝିବାରେ ଏବଂ ଶାନ୍ତି ଓ ଏକତା ସ୍ଥାପନ କରିବାରେ ସହାୟକ ହେବ । ଆମିନ୍ ।

(ସୟଦ ନକିବୁଲ୍ ଅମୀନ୍ ବର୍‌କୀ କାସମୀ)

**ଓଡ଼ିଶା ସାହିତ୍ୟ ଏକାଡେମୀ**

**ସଂସ୍କୃତିଭବନ, ଭୁବନେଶ୍ୱର-୭୫୧୦୧୪**

**ଫୋନ/ ଫାକ୍ସ-୪୩୧୮୪୦**



**ORISSA SAHITYA AKADEMI**

*(State Akademi of Letters)*
SANSKRUTI BHAVAN
BHUBANESWAR - 751014
Phone/Fax-431840

---

ଡକ୍ଟର ହୁସେନ୍ ରବିଗାଂଧୀ, ପି.ଏଚ୍.ଡି.
ସଭାପତି, ଓଡ଼ିଶା ସାହିତ୍ୟ ଏକାଡେମୀ

ଜନାବ ଶକୀଲ ଅହମଦ୍ ସାହେବ ଜଣେ ବିଜ୍ଞ ଓ ନିଜ ଧର୍ମ ସଂବଧରେ ତାଂକର ବେଶ୍ ଅଧ୍ୟୟନ ରହିଛି । ତା' ଛଡ଼ା ଏହି ଅଧ୍ୟୟନଲବ୍ଧ ଜ୍ଞାନକୁ ଅତି ସରଳ ଓ ପ୍ରାଞ୍ଜଳ ଭାଷାରେ ଲୋକଙ୍କୁ ବୁଝାଇ କହିବାର କଳା ମଧ୍ୟ ତାଙ୍କର ରହିଛି । ତାଂକର ମାତୃଭାଷା ଓଡ଼ିଆ ନ ହୋଇଥିଲେ ସୁଦ୍ଧା ସେ ଯେପରି ଓଡ଼ିଆ ଭାଷାରେ ନିଜ ଧର୍ମର ସାରକଥାମାନ ବର୍ଣ୍ଣନା କରି ଏକାଧିକ ପୁସ୍ତକ ରଚନା କରିବାରେ ସଫଳ ହେଲେଣି, ତାହା ତାଂକର ଓଡ଼ିଆ ଭାଷା ଉପରେ ଥିବା ଦଖଲକୁ ପ୍ରମାଣିତ କରୁଛି ।

ଇସ୍‌ଲାମ ଧର୍ମ ପୃଥିବୀର ସମସ୍ତ ଦିବ୍ୟ ସନ୍ଦେଶ ପରି ଏକ ଅତି ସରଳ, ମାନବାଦୀ ଓ ସାର୍ବଜନୀନ ମୂଲ୍ୟବୋଧ ଭିତ୍ତିକ ଧର୍ମ ଅଟେ । ପାଶ୍ଚାତ୍ୟ ଦେଶର କିଛି ଅସହିଷ୍ଣୁ ଲେଖକ ଏହି ଦିବ୍ୟସନ୍ଦେଶକୁ କଦର୍ଥ କରି ସାରା ବିଶ୍ୱର ଜନସାଧାରଣଙ୍କ ନିକଟରେ ପହଞ୍ଚାଇ ବିଶ୍ୱ ଜନମତକୁ ଇସ୍‌ଲାମ ଓ ମୁସଲମାନ ବିରୋଧି କରିବା ପାଇଁ ଏକ ନିନ୍ଦନୀୟ ଷଡ଼ଯନ୍ତ୍ର ରଚନା କରି ଚାଲିଛନ୍ତି, ତାକୁ ପ୍ରତିହତ କରି ପ୍ରକୃତରେ ଇସ୍‌ଲାମ ଧର୍ମର ଦର୍ଶନ କ'ଣ, ତାହା ଓଡ଼ିଆ ଭାଷୀ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବାକୁ ଜନାବ ଶକୀଲ ଅହମଦ୍ ଯେଉଁ ପ୍ରୟାସ କରୁଛନ୍ତି, ତାହା ପ୍ରଶଂସାଯୋଗ୍ୟ ।

ଭାରତ ପରି ବହୁ ଧର୍ମ, ବହୁ ସଂସ୍କୃତି ଓ ବହୁଭାଷୀ ଦେଶରେ ପରସ୍ପର ପରସ୍ପରକୁ ଭଲଭାବେ ଚିହ୍ନି ନିଜ ନିଜର ବିଶ୍ୱାସ ସହିତ ଅନ୍ୟର ବିଶ୍ୱାସକୁ ସମାନ ଆସନରେ ଆସୀନ ନ କଲେ, ଏ ଦେଶର ସଂହତି ବିପନ୍ନ ହୋଇଯିବ । ସୁତରାଂ, ଶକୀଲ ସାହେବ ଏ ଦିଗରେ ଜଣେ ସଚେତନ ଓ ଦାୟିତ୍ୱସମ୍ପନ୍ନ ମୁସଲମାନ ଭାବେ ନିଜର କର୍ମ କରିଚାଲିଛନ୍ତି ।

ମୁଁ ତାଂକର ପ୍ରୟାସର ସଫଳତା ତଥା ତାଙ୍କର ପୁସ୍ତକର ବିପୁଳ ଲୋକପ୍ରିୟତା ପାଇଁ ସର୍ବଶକ୍ତିମାନ ବିଶ୍ୱସ୍ରଷ୍ଟାଙ୍କ ନିକଟରେ ପ୍ରାର୍ଥନା କରୁଛି । ଆମେ ଯିଏ ଯେଉଁ ଧର୍ମର ବ୍ୟକ୍ତି ହୋଇଥାଉନା କାହିଁ, ଅନ୍ୟକୁ ବୁଝିବାକୁ ଓ ସମ୍ମାନ କରିବାକୁ ସର୍ବଦା ଯତ୍ନ କରିଲେ, ଭାରତ ସୁନାର ଦେଶରେ ପରିଣତ ହୋଇପାରିବ, ଏଥିରେ ସଂଦେହର ଅବକାଶ ନାହିଁ । ଜୟହିନ୍ଦ୍ ।

ଆଜମ୍‌ଖାନ୍ ବଜାର
କଟକ-୧
୩ ଜାନୁୟାରୀ, ୨୦୦୯

(ଡକ୍ଟର ହୁସେନ୍ ରବିଗାଂଧୀ)

**ଅନ୍ନଦା ପ୍ରସାଦ ରାୟ**
*ସଭାପତି*
ଉତ୍କଳ ସାହିତ୍ୟ ସମାଜ



ସାଇ ପରିବାର
କୃଷ୍ଣକାନ୍ତ ଭବନ, ପୁରୀଘାଟ
ତଳତେଲେଙ୍ଗା ବଜାର, କଟକ-୯
☎ ୨୬୧୩୯୭୬, ୨୬୧୦୨୮୫

# ଅଭିମତ

'ଇସ୍‌ଲାମ ପରିଚୟ' ଗ୍ରନ୍ଥଟିକୁ ଶ୍ରୀ ଶକୀଲ ଅହମଦ ପ୍ରଣୟନ କରି ଓଡ଼ିଆ ଭାଷାରେ ଇସ୍‌ଲାମ ଧର୍ମର ସ୍ୱରୂପ ଓ ସ୍ୱଧର୍ମ ବିଷୟରେ ଆଲୋକପାତ କରି ଓଡ଼ିଆ ଭାଷାଭାଷୀ ଇସ୍‌ଲାମ ଧର୍ମାବଲମ୍ବୀମାନଙ୍କର ମହୋପକାର ସାଧନ କରିଛନ୍ତି । ଏହା ବ୍ୟତୀତ ଅନ୍ୟ ଧର୍ମାବଲମ୍ବୀମାନଙ୍କୁ ମଧ୍ୟ ଇସ୍‌ଲାମ ଧର୍ମର ବ୍ୟୁତ୍ପତ୍ତି ଓ ବିକାଶ ସମ୍ପର୍କରେ ସଂକ୍ଷେପ ସୂଚନା ଦେଇଛନ୍ତି ଯାହା ତୁଳନାତ୍ମକ ଧର୍ମ ଅଧ୍ୟୟନ ସଂକ୍ରାନ୍ତ ଦିଗ୍‌ଦର୍ଶନ ଦେବାରେ ସହାୟକ ହେବ ।

ସମଗ୍ର ପୃଥିବୀରେ ବିଭିନ୍ନ ଧର୍ମ ସମ୍ପ୍ରଦାୟ କାଳକ୍ରମେ ମାନବ ସଭ୍ୟତାର ଓ ସଂସ୍କୃତିର ଏକ ଅଂଶ ହୋଇଯାଇଛି । ପୁରାଣ, ଇତିହାସ, ଭୂଗୋଳ, ଗଣିତ, ବିଜ୍ଞାନ ଇତ୍ୟାଦି ବିଧିବଦ୍ଧ ବିଚାର ଓ ସିଦ୍ଧାନ୍ତ ଭଳି ଧର୍ମ ମଧ୍ୟ ଏକ ଆଚରିତ ଓ ଉଚ୍ଚାରିତ ସତ୍ୟର ଅନୁଶୀଳନ କରେ । ସେହି ଦୃଷ୍ଟିରୁ ଇସ୍‌ଲାମରେ ଧାର୍ମିକ ଚିନ୍ତାଧାରାର ଅନୁଶୀଳନ କରି ଶ୍ରୀ ଶକୀଲ ଅହମଦ ଅନ୍ୟ ପ୍ରାଚୀନ ଧର୍ମଶାସ୍ତ୍ର ବେଦ ଓ ଆଧୁନିକ ଇତିହାସରେ ଚର୍ଚ୍ଚିତ ଖ୍ରୀଷ୍ଟିୟାନ ଧର୍ମଗ୍ରନ୍ଥ ବାଇବଲରୁ କେତେକ ବାଣୀ ଉଦ୍ଧାର କରି ତାଙ୍କ ରଚନାର ସୌଷ୍ଠବ ରକ୍ଷା ଦିଗରେ ସଫଳ ହୋଇପାରିଛନ୍ତି ।

'ଧର୍ମ କେବଳ ଏକ ବିଶ୍ୱାସ ନୁହେଁ, ଏହା ଏକ ଜୀବନଶୈଳୀ'—ଏକଥାକୁ ପ୍ରତିପାଦନ କରିବା ପାଇଁ ଶକୀଲ ଅହମଦ 'ଇସ୍‌ଲାମ ପରିଚୟ' ଗ୍ରନ୍ଥରେ ଇସ୍‌ଲାମ ଧର୍ମଗ୍ରନ୍ଥ କୁର୍‌ଆନରୁ ଉପାଦେୟ ଉଦ୍ଧୃତି ଦେଇ ଏହାର ବିଶ୍ୱମୁଖୀନତ୍ୱ ଏବଂ ମାନବବାଦୀ ଆଭିମୁଖ୍ୟକୁ ବିଶେଷିତ କରିଛନ୍ତି । ବିଶେଷକରି ଇସ୍‌ଲାମ ଧର୍ମ ସମ୍ପର୍କରେ ଏବଂ ଏହି ଧର୍ମାବଲମ୍ବୀ ମୁସଲମାନ୍‌ମାନଙ୍କ ନୈତିକ ଓ ଆଧ୍ୟାତ୍ମିକ ନିଷ୍ଠାର ଉପଯୁକ୍ତ ମୂଲ୍ୟାଙ୍କନ କରି ନିଜ ଜ୍ଞାନ ଓ ଉପଲବ୍ଧିର ପ୍ରମାଣ ଉପସ୍ଥାପିତ କରିଛନ୍ତି ।

ମହାତ୍ମାଗାନ୍ଧୀ ଯେପରି ହିନ୍ଦୁ-ମୁସଲମାନ ଧର୍ମର ସମନ୍ୱୟ ପାଇଁ 'ଈଶ୍ୱର ଆଲ୍ଲାହ୍ ତେରେ ନାମ୍'' ପ୍ରାର୍ଥନା ପ୍ରଚଳନ କରିଥିଲେ, ଶ୍ରୀ ଅହମଦ ସେହି ଭାବାଦର୍ଶରେ ଇସ୍‌ଲାମ ଧର୍ମ ଓ ଅନ୍ୟ ଧର୍ମ ବିଶେଷ କରି ହିନ୍ଦୁଧର୍ମର ତାତ୍ତ୍ୱିକ ଏକାତ୍ମତାକୁ ଦର୍ଶାଇ ନିରପେକ୍ଷତାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ସୃଷ୍ଟି କରିଛନ୍ତି । ଏହି ଗ୍ରନ୍ଥଟି ସ୍ୱକୀୟ ମହିମାରେ ସମସ୍ତଙ୍କ ପାଇଁ କିଛି କିଛି ପ୍ରେରଣା ପ୍ରଦାନ କରିବ ବୋଲି ମୋର ଦୃଢ଼ ବିଶ୍ୱାସ । ଏହି ଗ୍ରନ୍ଥର ପ୍ରସାର ଦ୍ୱାରା ଧାର୍ମିକ ମତାନ୍ଧତା ଅଚିରେ ଦୂରୀଭୂତ ହେବ ବୋଲି ମୋର ଆଶା ।

ଅନ୍ନଦା ପ୍ରସାଦ ରାୟ

(ଅନ୍ନଦା ପ୍ରସାଦ ରାୟ)

ଡକ୍ଟର ଉମେଶ ପତ୍ରୀ
ପ୍ରାକ୍ତନ ଇଂରାଜୀ ପ୍ରାଧ୍ୟାପକ
ରେଭେନ୍ସା କଲେଜ ଓ ବିଜେବି କଲେଜ
ପ୍ଲଟ୍ : ଡି./୩୨
ବିଜେବି ନଗର, ଭୁବନେଶ୍ୱର

## କେଇପଦ...

ଓଡ଼ିଆ ସାହିତ୍ୟରେ ହିନ୍ଦୁଧର୍ମ ଓ ଖ୍ରୀଷ୍ଟଧର୍ମ ସଂକ୍ରାନ୍ତରେ ଅଜସ୍ର ଗ୍ରନ୍ଥ ଲେଖାଯାଇଥିଲେ ମଧ୍ୟ ଇସ୍‌ଲାମ ଧର୍ମ ସଂକ୍ରାନ୍ତରେ ସେମିତି ଆଖିଦୃଶିଆ କୌଣସି ଗ୍ରନ୍ଥ ଏପର୍ଯ୍ୟନ୍ତ ଲେଖାଯାଇ ନଥିଲା । ଯେଉଁ ମୁସ୍‌ଲିମ କବି ଓ ଲେଖକ ଓଡ଼ିଆ ସାହିତ୍ୟରେ ପ୍ରସିଦ୍ଧି ପାଇଛନ୍ତି, ସେମାନଙ୍କ ସାହିତ୍ୟରେ ଇସ୍‌ଲାମର ପ୍ରଭାବ ନାହିଁ କହିଲେ ବୋଧହୁଏ ଭୁଲ୍ ହେବନାହିଁ । ଶକୀଲ ଅହମଦ୍‌ଙ୍କୁ ମୁଁ ଧନ୍ୟବାଦ ଦେଉଛି ଯେ, ସେ ଓଡ଼ିଆ ଭାଷାରେ ଇସ୍‌ଲାମ ସଂକ୍ରାନ୍ତରେ ଏକ ଗବେଷଣା ଗ୍ରନ୍ଥ 'ଇସ୍‌ଲାମ ପରିଚୟ' ଲେଖି ଇସ୍‌ଲାମର ପ୍ରକୃତ ସତ୍ୟକୁ ଲୋକଲୋଚନକୁ ଆଣିଛନ୍ତି ।

ଲେଖକ ଏହି ପୁସ୍ତକରେ ଏହାହିଁ ପ୍ରମାଣ କରିଛନ୍ତି ଯେ, ଇସ୍‌ଲାମ କିପରି ଏକ ପ୍ରାକୃତିକ ଧର୍ମ ଓ ବଞ୍ଚିବା ପାଇଁ ଏହାର ଏକ ସ୍ୱତନ୍ତ୍ର ଜୀବନଶୈଳୀ ଅଛି । ଏହାକୁ ବୁଝାଇବାକୁ ଯାଇ ଲେଖକ ମଣିଷର ବଞ୍ଚିବାର ଅଧିକାର, ସମାନତାର ଅଧିକାର, ସମ୍ମାନଗତ ଅଧିକାର, ନ୍ୟାୟଗତ ଅଧିକାର ଭଳି ଦଶଟି ମାନବାଧିକାରର ପ୍ରସଙ୍ଗକୁ ଗ୍ରନ୍ଥଟିରେ ଉପସ୍ଥାପନ କରିଛନ୍ତି । କୋରାନ୍ ଓ ହଦିସ୍‌ର ବହୁ ଉଦାହରଣକୁ ଲେଖକ ଏହି ଗ୍ରନ୍ଥରେ ଉଦ୍ଧୃତ କରିଛନ୍ତି ସତ; ମାତ୍ର ସେ ଗ୍ରନ୍ଥଗୁଡ଼ିକ ସଂକ୍ରାନ୍ତରେ ଆଲୋକପାତ କରାଯାଇ ପାରିନାହିଁ । ସେଥିପାଇଁ ଅଣମୁସଲମାନ୍‌ମାନଙ୍କ ବୁଝିବା ପାଇଁ କୁର୍‌ଆନ ଓ ହଦିସ୍‌ର ସାଧାରଣ ପରିଚୟ ଏଠି ଦେବା ଆବଶ୍ୟକ ମନେହେଉଛି । କାରଣ ଏ ଦୁଇଟି ସାହିତ୍ୟ ବିଷୟରେ ନ ଜାଣିଲେ ଶକୀଲ ଅହମଦଙ୍କ ଗବେଷଣାର ଆନନ୍ଦ ପାଠକେ ନେଇପାରିବେ ନାହିଁ ।

ଏଠି ମୁଁ କହିରଖୁଛି, ଇସ୍‌ଲାମ ଅର୍ଥ ଶାନ୍ତି ଓ ସମର୍ପଣ । ଏଥିରେ ଅଲ୍ଲାହ୍ ଏକମାତ୍ର ଏକ ଓ ତାଙ୍କ ଅନ୍ତିମ ପ୍ରେରିତ ହେଉଛନ୍ତି ହଜରତ୍ ମହମ୍ମଦ । ମହମ୍ମଦଙ୍କ ନିକଟକୁ ସ୍ୱର୍ଗଦୂତ ଜେବ୍ରିଏଲ୍‌ଙ୍କ ମାଧ୍ୟମରେ ଯେଉଁ ବାଣୀ ସବୁ ଦୀର୍ଘ ୨୩ବର୍ଷ ଧରି ଅବତରିତ ହେଉଥିଲା ସେସବୁର ସମାହାରକୁ ପବିତ୍ର କୋରାନ୍ କୁହାଯାଏ । ମକ୍କାବାସୀ ଯେତେବେଳେ ମହମ୍ମଦଙ୍କୁ କୌଣସି ଆଶ୍ଚର୍ଯ୍ୟ କର୍ମ ଦେଖାଇବାକୁ କହୁଥିଲେ ସେ ସେମାନଙ୍କୁ ଆତ୍ମବିଶ୍ୱାସ ସହ ଉତ୍ତର ଦେଉଥିଲେ : ''କୁର୍‌ଆନ ହିଁ ସବୁଠାରୁ ବଡ଼ ଆଶ୍ଚର୍ଯ୍ୟ ଓ ଆଶ୍ଚର୍ଯ୍ୟର ଆଶ୍ଚର୍ଯ୍ୟ । ଏଥିରୁ ବଳି ସେ ଆଉ କେଉଁ ଆଶ୍ଚର୍ଯ୍ୟ ଜଗତକୁ ଦେଖାଇପାରିବେ ?'' ଏଥିରେ ତାଙ୍କୁ ''ପାଗଳ କବି'' କହୁଥିବା ମକ୍କାବାସୀ ଚୁପ୍ ହୋଇଯାଇଥିଲେ ।

କୁର୍‌ଆନ ଆରବୀ ସାହିତ୍ୟର ଏକ ଶ୍ରେଷ୍ଠ ଉଦାହରଣ । ଭାଷାର ଲାଳିତ୍ୟ, ସଙ୍ଗୀତମୟତାରେ ପ୍ରବାହମାନ ଏ ଗ୍ରନ୍ଥଟିର ଯେକୌଣସି ଅଂଶ ପଢ଼ିଲେ, ଗଦ୍ୟରେ ମଧ୍ୟ ପଦ୍ୟର ଆନନ୍ଦ ମିଳିଯିବ । ଗ୍ରନ୍ଥଟିର ବିଷୟବସ୍ତୁ ଅନୁକ୍ରମରେ ଅଧ୍ୟାୟଗୁଡ଼ିକ ସଜ୍ଜିତ ହୋଇନଥିଲେ ମଧ୍ୟ ଏହା ୩୦ଭାଗରେ ବିଭକ୍ତ, ୧୧୪ ଅଧ୍ୟାୟ (ସୁରା)ବିଶିଷ୍ଟ, ୫୫୯ଟି ବିଭାଗଯୁକ୍ତ, ୬୨୪୦ ଆୟତ ବା ଶ୍ଳୋକଯୁକ୍ତ କୁର୍‌ଆନ ପଢ଼ିଲେ ମନେହେବ, ସତେଯେପରି ଆମେ ଏକ ସ୍ୱର୍ଗୀୟ କବିତା ଆବୃତ୍ତି କରୁଛୁ । ଏଥିରେ ୭୭୯୩୪ଟି ଶବ୍ଦ ଓ ୩୨୩୦୧୫ଟି ଅକ୍ଷର ରହିଛି ।

ପବିତ୍ର କୁର୍‌ଆନର ୧୧୪ଟି ସୁରା ମଧ୍ୟରୁ ୯୦ଟି ମକ୍କାରେ ଓ ୨୪ଟି ମଦିନାରେ ଅବତରଣ କରିଥିଲା । କୁର୍‌ଆନରେ ଇସ୍‌ଲାମର ମୌଳିକ ନୀତି-ନିୟମଗୁଡ଼ିକ ରହିଛି, ଯାହାର ବ୍ୟାଖ୍ୟା ହଦିସ୍‌ରେ କରାଯାଇଛି । 'ହଦିସ୍'ର ଆକ୍ଷରିକ ଅର୍ଥ କଥା । ମହାମାନ୍ୟ ମୁହମ୍ମଦଙ୍କ ଜୀବନୀ ଏବଂ ତାଙ୍କ ଦ୍ୱାରା ଦିଆଯାଇଥିବା ଶିକ୍ଷାର ପ୍ରାମାଣିକ ବିବରଣୀକୁ 'ହଦିସ୍' କୁହାଯାଏ ।

ବହୁ ବ୍ୟକ୍ତି ହଦିସ୍ ଲେଖିଥିଲେ ମଧ୍ୟ ରସୁଲଙ୍କ ମୃତ୍ୟୁ ପରେ ହଦିସ୍‌ଗୁଡ଼ିକ ସଙ୍କଳିତ ହେଲା । ରସୁଲ କେଉଁ କେଉଁ ଜାଗାରେ ରହିଥିଲେ, ଯାହା ଯାହା କହିଥିଲେ, କୁର୍‌ଆନର କେଉଁ ଆୟତ କେଉଁଠି ଓହ୍ଲାଇଥିଲା, ଏ ସମସ୍ତର ବିସ୍ତୃତ ବିବରଣୀ ସଙ୍କଳନକାରୀମାନେ ନିଷ୍ପାପର ଓ ନିଷ୍ପକ୍ଷ ଭାବରେ ଲେଖିଯାଇଛନ୍ତି । ପ୍ରସିଦ୍ଧ ଛଅଜଣ ସଙ୍କଳନକାରୀଙ୍କ ମଧ୍ୟରେ ମହମ୍ମଦ ଇବ୍‌ନେ-ଇସ୍ମାଇଲ-ଅଲ୍‌ବୁଖାରୀ ଓ ମୁସଲିମ୍-ଇବ୍‌ନେ-ଅଲ୍-ହିଜାଜ୍ ଚିରସ୍ମରଣୀୟ । ଏମାନଙ୍କ ବ୍ୟତୀତ ପରବର୍ତ୍ତୀ ସମୟରେ ହଦିସ୍ ସଂଗ୍ରହକର୍ତ୍ତାମାନଙ୍କ ମଧ୍ୟରେ ଆବୁ-ଦାଉଦ୍-ଅଲ୍-ସୁଜିସ୍ତାନୀ, ଆବୁ-ଇଶା ମହମ୍ମଦ ଅଲ୍-ତିର୍ମିଜୀ, ଅବୁ ଅବ୍‌ଦୁର୍ ରହମାନ-ଅନ୍-ନିସାଇ, ଅବୁ ଅବଦୁଲ୍ଲାହ୍ ଇବ୍‌ନେ-ମାଜା ଅନ୍ୟତମ ।



ହଦିସ୍‌ର ସହାୟତା ବିନା କୁର୍‌ଆନକୁ ସମ୍ପୂର୍ଣ୍ଣ ରୂପେ ବୁଝିବା କିମ୍ବା ଏହାର ସବୁ ଆଦେଶଗୁଡ଼ିକ ପାଳନ କରିବା ସମ୍ଭବ ନୁହେଁ । କାରଣ କୁର୍‌ଆନ ସମସ୍ତ ଶିକ୍ଷାଗୁଡ଼ିକର ବିସ୍ତୃତ ବିବରଣୀ ପ୍ରଦାନ କରେନାହିଁ । ଉଦାହରଣ ସ୍ୱରୂପ, କୁର୍‌ଆନରେ ନମାଜ ପାଠର ଆଦେଶ ଅଛି; କିନ୍ତୁ ନମାଜ କିପରି ପାଠ କରାଯିବ, ସେଥିରେ କ'ଣ ସବୁ ପଢ଼ାଯିବ, କେତେ ମାତ୍ରାରେ ପଢ଼ାଯିବ, ଏଗୁଡ଼ିକର ବିସ୍ତୃତ ବିବରଣୀ ସେଥିରେ ନାହିଁ । ସେହିପରି ରୋଜା, ଜକାତ୍, ହଜ୍ ଇତ୍ୟାଦି ପାଳନ କରିବାର ପଦ୍ଧତି କେବଳ ହଦିସ୍‌ରେ ବର୍ଣ୍ଣନା କରାଯାଇଛି ।

ମୁସଲମାନ ସମାଜରେ କେମିତି ଚଳିବାକୁ ହେବ, ତାହା ଅଲ୍ଲାହ୍ ରସୁଲଙ୍କ ଜରିଆରେ କହିଦେଇଛନ୍ତି । ଏଥିରେ କେଉଁପ୍ରକାର ଭାବରେ ଅଲ୍ଲାହ୍‌ଙ୍କ 'ଏବାଦତ୍' ବା ଉପାସନା କରାଯିବ, ପାକ୍ ବା ପବିତ୍ର ହେବାର ନିୟମ କ'ଣ, ନେକୀ ଓ ତକ୍‌ୱାଃ ବା ପୁଣ୍ୟ ଓ ଧର୍ମଭୀରୁତାର ପଥ କେଉଁଠି, ଅନ୍ୟ ମଣିଷର ପ୍ରାପ୍ୟ କିପରି ଭାବରେ ଦେବାକୁ ହେବ ଇତ୍ୟାଦି ସମ୍ପର୍କରେ ବର୍ଣ୍ଣନା ରହିଛି ।

ଜଣେ ଅଲ୍ଲାହ୍‌ଙ୍କୁ, ଅନ୍ତିମ ଦିବସ ବା କୟାମତ୍‌କୁ, ସ୍ୱର୍ଗଦୂତମାନଙ୍କୁ, ସବୁ ଦିବ୍ୟଗ୍ରନ୍ଥଗୁଡ଼ିକୁ ଓ ସମସ୍ତ ବାର୍ତ୍ତାବହମାନଙ୍କୁ ବିଶ୍ୱାସ ନକରି କେବେ ମଧ୍ୟ ନିଜକୁ ମୁସଲମାନ ବୋଲି ଦାବି କରିପାରିବ ନାହିଁ । ମୁସଲମାନ ହେବାକୁ ହେଲେ ପଞ୍ଚ ମହାକର୍ମ କରିବାକୁ ହେବ । ସେଗୁଡ଼ିକ ହେଲା–

୧) ଇମାନ୍ (ବିଶ୍ୱାସ) : ଏକ ଈଶ୍ୱର ଓ ମହମ୍ମଦ ତାଙ୍କ ପ୍ରେରିତ

୨) ନମାଜ୍ (ପ୍ରାର୍ଥନା) : ପାଞ୍ଚଥର ନମାଜ୍

୩) ରୋଜା (ଉପବାସ) : ରମଜାନ୍‌ରେ ବାଧ୍ୟତାମୂଳକ ଦିବା ଉପବାସ

୪) ଜକାତ୍ (ଦାନ) : ଗରିବଙ୍କ ପାଇଁ ଧନୀଙ୍କ ଦାନ

୫) ହଜ୍ (ତୀର୍ଥଯାତ୍ରା) : ନିଜ ଅର୍ଜିତ ଧନରେ ଜୀବନକାଳ ମଧ୍ୟରେ ଥରେ ମକ୍କାଯାତ୍ରା ଯଦି ସାମର୍ଥ୍ୟ ଥାଏ ।

ମହମ୍ମଦ ଆରବ ପାଇଁ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଥିଲେ । ଗୋଟିଏ ନିଷ୍ଠୁର ଓ ଅଶିକ୍ଷିତ ଜାତିକୁ ସେ ବୁଝାଇଦେବାରେ ସମର୍ଥ ହୋଇଥିଲେ ଯେ, ଦାସମାନଙ୍କ ସହିତ କିପରି ବ୍ୟବହାର କରିବା ଉଚିତ । ସନ୍ତାନ ହତ୍ୟା ନିଷିଦ୍ଧ କରିବା ସହିତ ସେଠି ପ୍ରଚଳିତ ବିବାହ ପ୍ରଥାରେ ସେ ସଂଶୋଧନ କଲେ ଓ ଉଚ୍ଚ-ନୀଚର ଭେଦଭାବ ପାଚେରୀକୁ ଭାଙ୍ଗିଦେବାରେ ସମର୍ଥ ହୋଇଥିଲେ ।

କୁରଆନ ଓ ହଦିଶ୍ ସମ୍ପର୍କରେ ଏତିକି ଜାଣିବା ପରେ ଶକୀଲ ଅହମଦ୍‌ଙ୍କ 'ଇସ୍‌ଲାମ ପରିଚୟ' ଆହୁରି ସୁଗମ ଓ ସୁଖପାଠ୍ୟ ହୋଇପଡ଼ିବ । ମୁଁ ଲେଖକଙ୍କୁ ପୁନର୍ବାର ସାଧୁବାଦ ଜଣାଉଛି ଯେ, ନିରଳସ ଭାବରେ ବହୁ ସତ୍ୟକୁ ସେ ଲୋକଲୋଚନକୁ ଆଣିବାକୁ ଚେଷ୍ଟା କରିଛନ୍ତି । ଏ ଚେଷ୍ଟା ଅବିରତ ରହୁ ।

ମହରମ୍ ୨୦୦୯

(ଡକ୍ଟର ଉମେଶ ପତ୍ରୀ)

# ଅଭିମତ...

ଶକିଲ୍ ଭାଇଙ୍କ 'ଇସ୍‌ଲାମ ପରିଚୟ' ପୁସ୍ତକଟି ପଢ଼ିଲାପରେ ଗୋଟିଏ କଥା ମନେ ପଡ଼ିଲା । ପଞ୍ଜାବର ବିଖ୍ୟାତ 'ସଙ୍ଗୀତ ନାଟକ ରତ୍ନ' ଗୁରୁଶରଣ ସିଂ ଲେଖିଛନ୍ତି–

ମେଁ ନହିଁ ଚାହାତା ଯେ ନଫରତ୍ କା ଜଙ୍ଗ ।
ଯେ ଜଲ୍‌ତା ଶୀର୍ ଯେ ମୌତ୍‌କା ମଙ୍ଗ ॥

ଆଜି ଆମ ଦେଶ ଉପରେ ଆତଙ୍କବାଦୀଙ୍କ ଆକ୍ରମଣ ଓ ସାମ୍ପ୍ରଦାୟିକ ଦଙ୍ଗାର କଳାବାଦଲ ଢାଙ୍କି ହୋଇଛି । ରାଜଧାନୀ ଦିଲ୍ଲୀଠାରୁ ଆରମ୍ଭ କରି ମୁମ୍ବାଇ ପର୍ଯ୍ୟନ୍ତ ବ୍ୟାପିଯାଇଛି ଆତଙ୍କବାଦର ଚେର । ବିଭିନ୍ନ ରାଜ୍ୟରେ ସାମ୍ପ୍ରଦାୟିକ ଦଙ୍ଗାରେ ବହୁ ନିରୀହ ଲୋକ ମୃତାହତ ହେବା ଦେଖାଯାଉଛି । କିନ୍ତୁ ଏ ସଂକ୍ରାନ୍ତରେ ତଦନ୍ତ ବା ବିଚାରକାର୍ଯ୍ୟ ଆରମ୍ଭ ନ ହେଉଣୁ ଲୋକଙ୍କ ମନରେ ଧାରଣା ଜନ୍ମାଇ ଦିଆଯାଉଛି ମୁସଲିମ୍ ସମ୍ପ୍ରଦାୟ ଆତଙ୍କବାଦୀ ଏବଂ ସେମାନେ ହିଁ ସବୁ ବିସ୍ଫୋରଣ ପାଇଁ ଦାୟୀ । କିନ୍ତୁ ମୁସଲିମ୍ ସମ୍ପ୍ରଦାୟ ଏହି ଆତଙ୍କବାଦୀମାନଙ୍କୁ ଘୃଣା କରେ । ଆତଙ୍କବାଦ ବିରୁଦ୍ଧରେ ମୁସଲିମ୍‌ମାନେ ପଟୁଆର ବାହାର କରି ସଭା କରୁଥିବାର ଦେଖାଯାଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଆତଙ୍କବାଦୀମାନଙ୍କର କୌଣସି ଧର୍ମ ନାହିଁ । ମାଲଗାଓଁ ବିସ୍ଫୋରଣ ଘଟଣାରେ ଏ.ଟି.ଏସ୍. ରିପୋର୍ଟରୁ ଏହା ସ୍ପଷ୍ଟ ଜଣାଯାଏ ।

ଏପରି ଏକ ଅବିଶ୍ୱାସ ଓ ଘଡ଼ିସନ୍ଧି ମୁହୂର୍ତ୍ତରେ ଏହି ପୁସ୍ତକଟି ଇସ୍‌ଲାମ ସମ୍ପର୍କରେ ପ୍ରକୃତ ତଥ୍ୟ ପ୍ରଦାନ କରିଛି । ଏ ପୁସ୍ତକଟି ପାଠ କଲାପରେ ଜଣେ ଭଲରୂପେ ଜାଣିପାରିବ ଯେ, ଇସ୍‌ଲାମରେ ସନ୍ତ୍ରାସବାଦ ବା ଅମାନବୀୟ କାର୍ଯ୍ୟର ସ୍ଥାନ ଆଦୌ ନାହିଁ । ଇସ୍‌ଲାମର ଅର୍ଥ ହେଉଛି ଶାନ୍ତି । ଶ୍ରଦ୍ଧା, ସ୍ନେହ, ମାନବିକତା ଏହି ଧର୍ମର ମନ୍ତ୍ର । ବିଶେଷ ଭାବେ ଆଧୁନିକ ସମାଜରେ ପ୍ରଚଳିତ ମାନବିକ ଅଧିକାର ଆପାତତଃ ଜନ୍ମ ନେଇଛି ଇସ୍‌ଲାମର ପବିତ୍ର ଗ୍ରନ୍ଥ କୁର୍‌ଆନରୁ । କୁର୍‌ଆନରେ ମାନବିକ ଅଧିକାରର ବିଭିନ୍ନ ଦିଗ ଉପରେ ଆଲୋକପାତ କରାଯାଇଛି । ୟୁରୋପ୍‌ରେ ୧୭ଶ ଶତାବ୍ଦୀରେ ମାନବିକ ଅଧିକାର ପ୍ରଶ୍ନ

ଉତ୍ଥାପିତ ହେଲା । ମାଗନା କାର୍ଟା (Magna Charta) କୁର୍ଆନର ଘୋଷିତ ମାନବିକ ଅଧିକାରର ୬୦୦ବର୍ଷ ପରେ ସୃଷ୍ଟି ହେଲା । ଆଧୁନିକ ବିଶ୍ୱର ଗଣତାନ୍ତ୍ରିକ ପନ୍ଥାରେ ଗଠିତ ସରକାରମାନେ ଯେଉଁ ମାନବିକ ଅଧିକାର ଓ ବ୍ୟକ୍ତି ସ୍ୱାଧିନତା ବିଷୟ ସେମାନଙ୍କ ସମ୍ବିଧାନରେ ଉଲ୍ଲେଖ କରିଛନ୍ତି, ତାହା କୁର୍ଆନରେ ରହିଛି । ଭାରତ ସମ୍ବିଧାନର ୨୧ଧାରାରେ ଥିବା ଜୀବନର ଅଧିକାର, ଧାରା ୧୪ରୁ ୧୮ ମଧରେ ଥିବା ସମାନତାର ଅଧିକାର, ଧାରା ୧୯ରେ ଥିବା ବାକ୍ ସ୍ୱାଧିନତା, ସଙ୍ଗଠନ ଗଢ଼ିବାର ଅଧିକାର, ଧାରା ୨୫ର ଧର୍ମୀୟ ଅଧିକାର, ଧାରା ୩୮ ଏବଂ ୩୯ରେ ପ୍ରଦତ୍ତ ଅର୍ଥନୈତିକ ଅଧିକାରସବୁ କୁର୍ଆନରେ ଦେଖିବାକୁ ମିଳେ ।

ତେଣୁ କୁର୍ଆନକୁ ସଠିକ୍ ଭାବେ ପଢ଼ିବାର ଆବଶ୍ୟକତା ଅଛି । ଉପରଠାଉରିଆ କରି ଏହାକୁ ପଢ଼ିଲେ ଏହାର ଅନ୍ତର୍ନିହିତ ବିଷୟବସ୍ତୁ ବୁଝିହେବ ନାହିଁ । Karen Armstrong ଲେଖିଛନ୍ତି–

> "We have to know how to read our scriptures. They demand an imaginative effort...
> A true meaning of scripture can never be wholly comprised in a literal reading of the text, since that text points beyond itself to a reality which cannot be adequately expressed in words as concept."

ତେଣୁ କୁର୍ଆନ ଗ୍ରନ୍ଥକୁ ଏହି ଦୃଷ୍ଟିରୁ ପାଠ କଲେ ସବୁ ଭ୍ରାନ୍ତଧାରଣା ଦୂର ହେବ । ଶକିଲ ଭାଇଙ୍କ ଉଦ୍ୟମ ଏହି ଭ୍ରାନ୍ତଧାରଣା ଦୂର କରିବା ପାଇଁ ଉଦ୍ଦିଷ୍ଟ ।

(ବଂଶୀଧର ଦାସ)

# ସୂଚୀପତ୍ର







# ଧର୍ମ କ'ଣ ?

'ଧର୍ମ' କ'ଣ, ଏହା ବୁଝିବା ପାଇଁ କୌଣସି ଗୂଢ଼ ଜ୍ଞାନର ଆବଶ୍ୟକତା ନାହିଁ । ମନୁଷ୍ୟର ସାଧାରଣ ଜ୍ଞାନ ହିଁ ଏଥିପାଇଁ ଯଥେଷ୍ଟ । ଓଡ଼ିଆ ଅଭିଧାନ ଅନୁସାରେ 'ଧର୍ମ'ର ଅର୍ଥ 'ପୁଣ୍ୟ' ବା 'ସାମ୍ପ୍ରଦାୟିକ ଈଶ୍ୱର ବିଶ୍ୱାସ' ଏବଂ ଏହାର ଅର୍ଥ ମଧ୍ୟ 'କର୍ତ୍ତବ୍ୟ', 'ପ୍ରକୃତି', ଗୁଣ ବା 'Property'+ । ସୃଷ୍ଟିର ପ୍ରତ୍ୟେକ ବସ୍ତୁ ପାଇଁ କିଛି ନିର୍ଦ୍ଧାରିତ କର୍ତ୍ତବ୍ୟ ବା ନିୟମ ରହିଛି, ଯାହାକୁ ତାର ସ୍ୱଭାବ, ପ୍ରକୃତି ବା ଗୁଣ ମଧ୍ୟ କୁହାଯାଇଥାଏ । ଏହାକୁ ବସ୍ତୁଟିର 'ଧର୍ମ' ମଧ୍ୟ କୁହାଯାଏ । ଉଦାହରଣ ସ୍ୱରୂପ, ସୂର୍ଯ୍ୟ ଯେଉଁ ନିର୍ଦ୍ଦିଷ୍ଟ ନିୟମ ଅନୁଯାୟୀ କାର୍ଯ୍ୟ କରିଥାଏ, ତାକୁ ସୂର୍ଯ୍ୟର 'ଧର୍ମ' କୁହାଯାଏ । ଚନ୍ଦ୍ର ଯେଉଁ ନିୟମ ପାଳନ କରେ, ତାକୁ ଚନ୍ଦ୍ରର ଧର୍ମ କହନ୍ତି । ସେହିପରି ଜଳ ପାଇଁ ନିର୍ଦ୍ଧାରିତ ନିୟମ ହିଁ ଜଳର ଧର୍ମ, ଯଥା—ଜଳ ସର୍ବଦା ନିମ୍ନଗାମୀ ହୁଏ, ଏକ ନିର୍ଦ୍ଦିଷ୍ଟ ଉତ୍ତାପରେ ବାଷ୍ପ ହୋଇଯାଏ ଇତ୍ୟାଦି । ଏହିଭଳି ପ୍ରତ୍ୟେକ ସୃଷ୍ଟି ସ୍ରଷ୍ଟାଙ୍କ ଦ୍ୱାରା ନିର୍ଦ୍ଧାରିତ କିଛି ନିୟମ ପାଳନ କରେ । ତାହିଁ ତାର କର୍ତ୍ତବ୍ୟ ବା ପ୍ରକୃତି ଏବଂ ତାହାହିଁ ତାର 'ଧର୍ମ' ।



ସୂର୍ଯ୍ୟ, ଚନ୍ଦ୍ର, ଜଳ, ବାୟୁ, ପଶୁ-ପକ୍ଷୀ, ତରୁଲତା—ସକଳ ଜଗତ ଈଶ୍ୱରଙ୍କ ନିକଟରେ ସଂପୂର୍ଣ୍ଣ ସମର୍ପିତ ଏବଂ ତାଙ୍କରି ନିର୍ଦ୍ଧାରିତ ନିୟମ ଅନୁଯାୟୀ ପରିଚାଳିତ । ଏହାହିଁ ସେମାନଙ୍କର ଧର୍ମ । ମନୁଷ୍ୟ ଜୀବନର ଏକ ବିଶାଳ ପରିସର, ଯଥା—ଜନ୍ମ-ମୃତ୍ୟୁ, ଶୈଶବ, ଯୌବନ, ବାର୍ଦ୍ଧକ୍ୟ, ସୁଖ-ଦୁଃଖ ଆଦି ମଧ୍ୟ ପ୍ରକୃତିର ସେହି ନିୟମରେ ବନ୍ଧା । ମନୁଷ୍ୟର ପ୍ରତିଟି ଅଙ୍ଗପ୍ରତ୍ୟଙ୍ଗ, ତା' ମସ୍ତିଷ୍କ, ହୃତ୍‌ପିଣ୍ଡ, ଫୁସ୍‌ଫୁସ୍, ପାକସ୍ଥଳୀ, ଯକୃତ ଆଦି ମଧ୍ୟ ଈଶ୍ୱରଙ୍କ ନିର୍ଦ୍ଧାରିତ ନିୟମ ଅନୁଯାୟୀ ପରିଚାଳିତ । ହୃତ୍‌ପିଣ୍ଡ ଯାହା କର୍ଯ୍ୟ କରେ, ତାହାହିଁ ତାର

---

+ ବୃହତ୍ ଓଡ଼ିଆ ଅଭିଧାନ—ବାବା ବୈଦ୍ୟନାଥ ପାଢୀ, ପ୍ରକାଶକ: ଫ୍ରେଣ୍ଡସ୍ ପବ୍ଲିର୍ଶସ୍, ବିନୋଦବିହାରୀ, କଟକ ।

କର୍ତ୍ତବ୍ୟ——ତା'ର ଧର୍ମ । ଏମାନଙ୍କୁ ନିୟମ ଲଂଘନ କରିବାର ସ୍ୱାଧିନତା ଦିଆଯାଇ ନାହିଁ । ଏମାନେ ଈଶ୍ୱର ଆଦେଶ ପାଳନ କରିବା ପାଇଁ ବାଧ୍ୟ । ନ ହେଲେ ସୃଷ୍ଟି ତିଷ୍ଠି ପାରିବ ନାହିଁ । ଏମାନଙ୍କୁ ସ୍ୱାଧିନତା ଦେଲେ ହୁଏତ ସୂର୍ଯ୍ୟ କହିବ–''ଆଜି ଟିକେ ଦୁଇ-ଚାରି ଶହ ମାଇଲ ପୃଥିବୀ ଆଡ଼େ ବୁଲି ଯିବି'' କିମ୍ବା ସମୁଦ୍ର କହିପାରେ ଯେ, 'ଆଜି ଟିକେ ସହର ଆଡ଼େ ଗୋଟାଏ ରାଉଣ୍ଡ ମାରି ଆସେ' । ପାଣି ବାଷ୍ପ ହେବା ପାଇଁ ମନା କରିପାରେ କିମ୍ବା ହୃତ୍‌ପିଣ୍ଡ ତା' କାର୍ଯ୍ୟ ବନ୍ଦ କରି ବିଶ୍ରାମ ନେଇପାରେ । ଯେହେତୁ ଏମାନଙ୍କ ଉପରେ ମାନବ ଜୀବନର ଅସ୍ତିତ୍ୱ ନିର୍ଭର କରେ, ତେଣୁ ଏମାନଙ୍କୁ ନିୟମ ଲଂଘନ କରିବାର ସ୍ୱାଧିନତା ଦିଆଯାଇ ନାହିଁ । କିନ୍ତୁ ମନୁଷ୍ୟ ଏକ ଭିନ୍ନ ପ୍ରାଣୀ । ତାକୁ ତା'ର ଆୟତ୍ତାଧିନ କର୍ମକ୍ଷେତ୍ରରେ ସ୍ୱାଧିନତା ଦିଆଯାଇଛି । ସେ ନିୟମ ପାଳନ କରିପାରେ ଏବଂ ନିୟମ ଲଂଘନ ମଧ୍ୟ କରିପାରେ, ଯଥା–ସତ୍ୟ କହିପାରେ ଏବଂ ମିଥ୍ୟା ମଧ୍ୟ କହିପାରେ । ଚୋରି କରିପାରେ କିମ୍ବା ସେଥିରୁ ନିବୃତ୍ତ ମଧ୍ୟ ରହିପାରେ । ମନୁଷ୍ୟକୁ ଯଦି ଅନ୍ୟମାନଙ୍କ ପରି ସଂପୂର୍ଣ୍ଣ ଭାବେ ନିୟମରେ ବାନ୍ଧି ରଖାଯାଇ ଥାଆନ୍ତା, ତେବେ ତା' ସୃଷ୍ଟିର ଉଦ୍ଦେଶ୍ୟ ସାଧନ ହୁଅନ୍ତା ନାହିଁ । କାରଣ ତା' ଭକ୍ତି ଓ ଧର୍ମନିଷ୍ଠତାର ପରୀକ୍ଷା ସମ୍ଭବ ହୁଅନ୍ତା ନାହିଁ । ଯଦି କରିବା ବା ନ କରିବାର ସ୍ୱାଧିନତା ନାହିଁ, ତେବେ ପରୀକ୍ଷାର ପ୍ରଶ୍ନ ଉଠୁଛି କେଉଁଠି ? ସେ ଯାହା ଅନ୍ୟାୟ ଅପକର୍ମ କରନ୍ତା, ସେଥିପାଇଁ ସେ ଦାୟୀ ରୁହନ୍ତା ନାହିଁ ବରଂ ଈଶ୍ୱର ଦାୟୀ ରୁହନ୍ତେ, କାରଣ ତାଙ୍କରି ଇଚ୍ଛା ଅନୁସାରେ ସେ କର୍ମ କଲା । ସେ ତ ନିମିତ୍ତ ମାତ୍ର । ଏପରି ସ୍ଥଳେ ସଂସାରର ସୃଷ୍ଟି ଗୋଟିଏ ନାଟକ ହୋଇଯାଆନ୍ତା । ତେଣୁ ମନୁଷ୍ୟକୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ଈଶ୍ୱର ତାକୁ ବୁଦ୍ଧି, ବିବେକ ଓ ବିଚାର ଶକ୍ତି ପ୍ରଦାନ କରି କୌଣସି ନିର୍ଦ୍ଦିଷ୍ଟ କର୍ମକୁ କରିବା ବା ନ କରିବାର ସ୍ୱାଧିନତା ଦେଇଛନ୍ତି, ଯାହା ଫଳରେ ସେ ଭଲ ଓ ମନ୍ଦ ଉଭୟ କାର୍ଯ୍ୟ କରିପାରିବ । ଏହା ସହିତ ତାଙ୍କର ପ୍ରିୟ ଓ ଅପ୍ରିୟ ପଥ ସମ୍ପର୍କରେ ମାର୍ଗଦର୍ଶନ କରି ପରିଣାମ ବିଷୟରେ ତାକୁ ସଚେତନ ମଧ୍ୟ କରି ଦେଇଛନ୍ତି । ମାନବ ଜାତିର କଲ୍ୟାଣ ପାଇଁ ସ୍ରଷ୍ଟାଙ୍କ ଦ୍ୱାରା ନିର୍ଦ୍ଧାରିତ ସେହି ଚିରନ୍ତନ 'ନିୟମ' ହିଁ ତାର ଧର୍ମ । ସେହି ଦିବ୍ୟ ବିଧାନ ଧାରଣ କରି ପୃଥିବୀର ସମସ୍ତ ଦିବ୍ୟ ଗ୍ରନ୍ଥଗୁଡ଼ିକର ଅବତରଣ ହୋଇଛି । ଈଶ୍ୱର ଚାହାନ୍ତି ଯେ ସୃଷ୍ଟିର ଅନ୍ୟମାନଙ୍କ ପରି ମନୁଷ୍ୟ ମଧ୍ୟ ନିଜକୁ ତାଙ୍କ ନିକଟରେ ସମର୍ପଣ କରିଦେଉ ଏବଂ ତାଙ୍କରି

ପ୍ରଦତ୍ତ ନିୟମ ଅନୁଯାୟୀ ଜୀବନ ନିର୍ବାହ କରୁ । ପ୍ରଥା ଓ ପରମ୍ପରାର ବନ୍ଧନରେ ବା ଇନ୍ଦ୍ରିୟ ପ୍ରରୋଚନାରେ ନ ପଡୁ । ନିଜ ସ୍ରଷ୍ଟାଙ୍କ ପ୍ରତି ଏହି ସମର୍ପଣ ଓ ଆନୁଗତ୍ୟକୁ ଆରବୀ ଭାଷାରେ 'ଇସଲାମ' କୁହାଯାଏ ।

## ♦ ଧର୍ମ କେବଳ ଏକ ବିଶ୍ୱାସ ନୁହେଁ

ଅଧିକାଂଶ ଲୋକଙ୍କର ଧରଣା ରହିଛି ଯେ 'ଧର୍ମ' ଗୋଟିଏ ବିଶ୍ୱାସ ମାତ୍ର । ଏହା କେବଳ ବ୍ୟକ୍ତିଗତ ପୂଜା-ଉପାସନା ସହ ସଂପୃକ୍ତ ଏବଂ ଜୀବନର ଅବଶିଷ୍ଟ କ୍ଷେତ୍ରଗୁଡ଼ିକ ସହ ଧର୍ମର କୌଣସି ସମ୍ପର୍କ ନାହିଁ । କିନ୍ତୁ ପ୍ରକୃତରେ କେବଳ ପୂଜା-ଅର୍ଚ୍ଚନା ଓ କର୍ମକାଣ୍ଡ ଯୋଗୁଁ କାହାରିକୁ ଧର୍ମନିଷ୍ଠ କୁହାଯାଏ ନାହିଁ । ବରଂ ତାର ସଦାଚରଣ, ଯଥା–ସାଧୁତା, ସତ୍ୟବାଦୀତା, ଦାନଶୀଳତା, ଦୟାପରାୟଣତା, ପରୋପକାରିତା ଓ ନ୍ୟାୟପରାୟଣତା ଆଦି ଗୁଣ ଯୋଗୁଁ ଜଣେ ବ୍ୟକ୍ତିକୁ 'ଧାର୍ମିକ' କୁହଯାଏ । ଅବଶ୍ୟ ଉପାସନା ଧର୍ମର ଏକ ଅବିଚ୍ଛେଦ୍ୟ ଅଙ୍ଗ ଏବଂ ଏହାରି ଉପରେ ହିଁ ଧର୍ମର ଅଟ୍ଟାଳିକା ଗଢ଼ା ହୁଏ, କିନ୍ତୁ କେବଳ ପୂଜା-ଉପାସନାରେ ରତ ଓ ଯାବତୀୟ ଅପକର୍ମରେ ଲିପ୍ତ ବ୍ୟକ୍ତିକୁ କୌଣସି ସଭ୍ୟ ସମାଜ ଧାର୍ମିକ କହେ ନାହିଁ ।

ପୂଜା ଅର୍ଚ୍ଚନା ବ୍ୟତୀତ ଜୀବନର ବିଭିନ୍ନ କ୍ଷେତ୍ରରେ ଅନେକ କର୍ମ ରହିଛି, ଯାହାକୁ ଦିବ୍ୟ ଗ୍ରନ୍ଥଗୁଡ଼ିକରେ 'ପାପ' ବା 'ପୁଣ୍ୟ' ଆଖ୍ୟା ଦିଆଯାଇଛି । କେତେକ କର୍ମକୁ ମଧ 'ମହାପାପ' ବୋଲି କୁହାଯାଇଛି । ଏହା ବୁଝିବାରେ କୌଣସି ଅସୁବିଧା ନାହିଁ ଯେ, 'ପାପ' ବା 'ପୁଣ୍ୟ' ସର୍ବଦା ଧର୍ମ ସହ ହିଁ ସଂପୃକ୍ତ ଏବଂ 'ପାପ' ବା 'ପୁଣ୍ୟ' ଶବ୍ଦ ସହ ସଂପୃକ୍ତ କର୍ମଗୁଡ଼ିକ ମଧ ଧର୍ମର ଅନ୍ତର୍ଭୁକ୍ତ ।

ଏହା ବ୍ୟତୀତ ଆମେ ଦେଖୁ ଯେ, ନିଷ୍ଠାପର ଭାବେ ନିଜ ଧର୍ମ ପାଳନ କରୁଥିବା ବ୍ୟକ୍ତିମାନେ ନିଜ ଧର୍ମ ବିଧି ଅନୁସାରେ କେବଳ ପୂଜା-ଅର୍ଚ୍ଚନା କରନ୍ତି ନାହିଁ, ବରଂ ସେମାନେ ଜୀବନର ଅବଶିଷ୍ଟ କ୍ଷେତ୍ରଗୁଡ଼ିକରେ ମଧ ଅନ୍ୟ ଧର୍ମର ନୀତି-ନିୟମ ପାଳନ କରନ୍ତି ନାହିଁ । ଯଥା–ହିନ୍ଦୁ ଭାଇମାନେ ମୁସଲିମ୍‌ମାନଙ୍କ ପରି ପୋଷାକ ପିନ୍ଧନ୍ତି ନାହିଁ, ନୈଷ୍ଠିକ ମୁସଲିମ୍‌ମାନେ ଖାଦ୍ୟ-ପାନୀୟ ବିଷୟରେ ହିନ୍ଦୁ ରୀତି ଅନୁସରଣ କରନ୍ତି ନାହିଁ କିମ୍ବା ଖ୍ରୀଷ୍ଟିୟାନ୍ ଭାଇମାନେ ମୁସଲିମ ନିୟମ ଅନୁସାରେ ବିବାହ, ବ୍ରତ ଆଦି କରନ୍ତି ନାହିଁ । ପ୍ରତ୍ୟେକ ନିଜ ନିଜ

ଧର୍ମୀୟ ପ୍ରଥା ଅନୁସରଣ କରନ୍ତି । ଏହାର ଅର୍ଥ ହେଲା ଯେ ଧର୍ମ କେବଳ ପୂଜା-ଉପାସନା ବା ଏକ ବିଶ୍ୱାସ ମାତ୍ର ନୁହେଁ ।

ପ୍ରକୃତରେ ଧର୍ମ ହେଉଛି ଈଶ୍ୱର ବିଶ୍ୱାସ ଉପରେ ଆଧାରିତ ଏକ ଉପାସନା-କେନ୍ଦ୍ରିକ ସମ୍ପୂର୍ଣ୍ଣ ଜୀବନଶୈଳୀ । ଜୀବନର ପ୍ରତ୍ୟେକଟି କର୍ମକ୍ଷେତ୍ର ଏହାର ପରିସରଭୁକ୍ତ । ଧର୍ମ କେବଳ ବ୍ୟକ୍ତିର ଆଧ୍ୟାତ୍ମିକ ଜୀବନର ଉନ୍ନତି ପାଇଁ ନୁହେଁ, ବରଂ ତାର ନୈତିକ, ପାରିବାରିକ, ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ତଥା ଅନ୍ୟ ସମସ୍ତ କ୍ଷେତ୍ରର ଶାନ୍ତି ଓ ସଫଳତା ପାଇଁ ସ୍ରଷ୍ଟାଙ୍କ ଦ୍ୱାରା ନିର୍ଦ୍ଧାରିତ ଜୀବନ ପଦ୍ଧତି ।





# ଧର୍ମର ଆବଶ୍ୟକତା

ବଜାରରୁ ଫ୍ରିଜ୍, କାର୍ ବା ମୋବାଇଲ୍ ଫୋନ୍‌ଟିଏ କିଣିଲେ ନିର୍ମାତାଙ୍କ ତରଫରୁ ତା' ସହିତ ଗୋଟିଏ ଇନ୍‌ଷ୍ଟ୍ରକ୍‌ସନ୍ ମାନ୍ୟୁଆଲ୍ ବା ଗାଇଡ୍ ବହି ଦିଆଯାଇଥାଏ, ଯେଉଁଥିରେ ସେହି ଉପକରଣଟିର ସଠିକ୍ ବ୍ୟବହାର ସମ୍ପର୍କରେ ଉପଦେଶମାନ ରହିଥାଏ । ନିର୍ମାତା ଜାଣନ୍ତି ଯେ, ତାଙ୍କର ସବୁ ଗ୍ରାହକ ଅଶିକ୍ଷିତ ନହୁନ୍ତି । ସେମାନଙ୍କ ମଧ୍ୟରେ ବଡ଼ ବଡ଼ ଶିକ୍ଷାବିତ୍ ଡ଼ାକ୍ତର, ଇଞ୍ଜିନିୟର ଏବଂ ପ୍ରଫେସର ମଧ୍ୟ ଅଛନ୍ତି । ତଥାପି ନିର୍ମାତା ମାର୍ଗଦର୍ଶନ କରନ୍ତି ।

ଏହାର କାରଣ ହେଉଛି ଯେ, କୌଣସି ବସ୍ତୁର ନିର୍ମାତା ହିଁ ନିଜ ବସ୍ତୁ ବିଷୟରେ ସଠିକ୍ ଭାବରେ ଜାଣିଥାଆନ୍ତି । ତା'ର ପ୍ରତିଟି ଯନ୍ତ୍ରାଂଶର ଗୁଣ ଓ କାର୍ଯ୍ୟ ପ୍ରଣାଳୀ ସମ୍ପର୍କରେ ସେ ଭଲରୂପେ ଅବଗତ ଥାଆନ୍ତି । ବସ୍ତୁଟିର କିଭଳି ବ୍ୟବହାର ଲାଭଦାୟକ ବା କ୍ଷତିକାରକ ହେବ ତାହା ସେ ଜାଣନ୍ତି । ଏହି କାରଣ ଯୋଗୁଁ ବସ୍ତୁଟିର ଉପଯୋଗ ସମ୍ପର୍କରେ କେବଳ ନିର୍ମାତା ହିଁ ମାର୍ଗଦର୍ଶନ କରାଇଥାଆନ୍ତି ।



ଯଦି ବସ୍ତୁଟି କୌଣସି ଜଟିଳ ଧରଣର ହୋଇଥାଏ, ଯଥା—କୌଣସି ମିଲ୍ ବା କଳ-କାରଖାନା ଇତ୍ୟାଦି, ତେବେ କେବଳ ଗାଇଡ୍ ବହିଟି ଗ୍ରାହକଙ୍କ ପାଇଁ ଯଥେଷ୍ଟ ହୁଏ ନାହିଁ । ତା' ସହିତ କମ୍ପାନୀ ତରଫରୁ ଜଣେ ଗାଇଡ୍ ବା ମାର୍ଗଦର୍ଶକ ନିଯୁକ୍ତ କରାଯାଏ, ଯିଏ ମେସିନ୍‌ଟିର ବ୍ୟବହାର ସମ୍ପର୍କରେ ଗ୍ରାହକଙ୍କୁ ମୌଖିକ ରୂପେ ବୁଝାନ୍ତି ଏବଂ ନିଜେ ପ୍ରାକ୍ଟିକାଲ ଭାବେ ତାକୁ ଚଳାଇ ଦେଖାଇ ଦିଅନ୍ତି ।

ଅବଶ୍ୟ ମନୁଷ୍ୟ କୌଣସି ଯନ୍ତ୍ର ନୁହେଁ । କିନ୍ତୁ ମନୁଷ୍ୟର ନିର୍ମାତା ତାକୁ ଯେଉଁ ଉନ୍ନତ ମାନର କାରିଗରୀ କୌଶଳରେ ଗଢ଼ିଛନ୍ତି, ସଂସାରରେ ତାର ତୁଳନା ନାହିଁ । ମାନବ ହେଉଛି ସଂସାରର ସବୁଠାରୁ ଶ୍ରେଷ୍ଠ ଓ ଜଟିଳତମ ସୃଷ୍ଟି । ବିଭିନ୍ନ ସଦ୍‌ଗୁଣ ଧାରଣ କରିଥିବା ଏହି ମଣିଷ ମଧ୍ୟରେ ସ୍ୱାର୍ଥ-ଲୋଭ, କାମନା-

ବାସନା, ରାଗ-ଈର୍ଷା, ର୍ଗବ-ଅହଂକାର ଆଦି ଅନେକ ଦୁର୍ଗୁଣ ମଧ୍ୟ ରହିଛି । ଯେପରି ସେ ଦୟା, ପ୍ରେମ ଓ ପରୋପକାର କରିପାରେ, ସେହିପରି ସେ ଚୋରି, ଡ଼ାକୟତି ଓ ଯାବତୀୟ ଅନ୍ୟାୟ ଅତ୍ୟାଚାର ମଧ୍ୟ କରିପାରେ । ତାକୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ଈଶ୍ୱର ମନୁଷ୍ୟକୁ ସତ୍ ଓ ଅସତ୍ ଉଭୟ କର୍ମ କରିବାର ସାମର୍ଥ୍ୟ ପ୍ରଦାନ କରିଛନ୍ତି । ସେ ଦେଖିବାକୁ ଚାହାନ୍ତି ଯେ, କିଏ ତାଙ୍କ ପ୍ରସନ୍ନତା ପାଇଁ ସତ୍‌କର୍ମ କରୁଛି ଆଉ କିଏ ତାଙ୍କର ଅବଜ୍ଞା କରୁଛି ।

ଜଣେ ସାମାଜିକ ପ୍ରାଣୀ ଭାବରେ ପାରିବାରିକ ଜୀବନଠାରୁ ଆରମ୍ଭ କରି ରାଷ୍ଟ୍ରୀୟ ତଥା ଅନ୍ତରାଷ୍ଟ୍ରୀୟ ସ୍ତର ପର୍ଯ୍ୟନ୍ତ ଅଗଣିତ ଜନତାଙ୍କ ସହ ମଣିଷ ସଂଶ୍ଲିଷ୍ଟ ଥାଏ । ହଜାର-ହଜାର ନରନାରୀଙ୍କ ଜୀବନ ଉପରେ ତା' କର୍ମର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ ପଡ଼ିଥାଏ ଏବଂ ତା'ର ପ୍ରତିଟି ସତ୍ ବା ଅସତ୍ କର୍ମ ତା' ନିଜର ତଥା ସମାଜର ବିଭିନ୍ନ କ୍ଷେତ୍ରକୁ ପ୍ରଭାବିତ କରେ । ବେଳେବେଳେ ମନୁଷ୍ୟ ପଶୁଠାରୁ ମଧ୍ୟ ହୀନ ହୋଇଯାଏ । ବ୍ୟାଙ୍କଗୁଡ଼ିକର ଗେଟ୍ ସାମନାରେ ଯେଉଁ ବନ୍ଧୁକଧାରୀ ଜଗୁଆଳୀ ପହରା ଦିଅନ୍ତି, ସେମାନେ କାହା ଭୟରେ ଜଗି ଥାଆନ୍ତି ? କ'ଣ ଜଙ୍ଗଲରୁ ବାଘ-ଭାଲୁ ଆସି ଟଙ୍କା ଲୁଟି ନେବେ ? ଏକଥା ନୁହେଁ । ଏ କାର୍ଯ୍ୟ ସଂସାରର ଶ୍ରେଷ୍ଠ ପ୍ରାଣୀ ମନୁଷ୍ୟ ହିଁ କରେ । ଏଥିପାଇଁ ତାକୁ ନିୟନ୍ତ୍ରଣ କରିବା ପାଇଁ ଶୃଙ୍ଖଳାର ଆବଶ୍ୟକତା ରହିଛି ।



ଏହି କାରଣରୁ ଈଶ୍ୱର ମଣିଷର ଭୌତିକ ଆବଶ୍ୟକତାଗୁଡ଼ିକୁ ପୂରଣ କରିବାର ବ୍ୟବସ୍ଥା କରିବା ସହିତ ତାର ସଦ୍-ଜୀବନଯାପନ ପାଇଁ ଆଧ୍ୟାତ୍ମିକ ଦିଗ୍‌ଦର୍ଶନର ବ୍ୟବସ୍ଥା ମଧ୍ୟ କରିଛନ୍ତି । ଅଗଣିତ ନରନାରୀଙ୍କ ସହ ଏକତ୍ର ବସବାସ କରିବାକୁ ଛାଡ଼ିଦେଇ ସେ ତାକୁ ପଥହରା କରିଦେଇ ନାହାନ୍ତି ।

ଆମେ ଜାଣୁ ଯେ, ଛୋଟ ସଂସ୍ଥା ବା ସଙ୍ଗଠନଟିଏ ଶୃଙ୍ଖଳିତ ଭାବେ କାର୍ଯ୍ୟ କରିବା ପାଇଁ କିଛି ନୀତି-ନିୟମ ଦରକାର କରେ । ଗୋଟିଏ ରାଷ୍ଟ୍ରର ପରିଚାଳନା ପାଇଁ ଆଇନ-କାନୁନର ଆବଶ୍ୟକତା ପଡ଼େ । କୋଟି କୋଟି ନରନାରୀ ବସବାସ କରୁଥିବା ଏ ବିଶାଳ ବିଶ୍ୱ ପରିବାର ପାଇଁ କ'ଣ ବିଧି-ବିଧାନର ଆବଶ୍ୟକତା ନାହିଁ ?

ଜୀବନଯାପନ କରିବାର ବିଭିନ୍ନ ପଥ ଅଛି । ମଣିଷର ପ୍ରତିଟି ଆବଶ୍ୟକତାକୁ ପୂରଣ କରିବାର ଏକାଧିକ ବାଟ ରହିଛି । କିଛି ଲୋକ ଗୋଟିଏ

ନିର୍ଦ୍ଦିଷ୍ଟ ବାଟକୁ ଠିକ୍ ବୋଲି କହୁଥିବା ବେଳେ ଅନ୍ୟ କେତେକ ତାକୁ ଭୁଲ ମଧ୍ଯ କହନ୍ତି । ପୂଜା-ଉପାସନାର ଗୋଟିଏ ପଦ୍ଧତିକୁ ଜଣେ ଠିକ୍ କହେ ତ ସେଇ ପଦ୍ଧତିକୁ ଆଉ ଜଣେ ଭୁଲ କହେ । ଗୋଟିଏ ଖାଦ୍ୟ ବସ୍ତୁକୁ ଜଣେ ବିଧିସମ୍ମତ ଭାବୁଥିବା ବେଳେ ଆଉ ଜଣେ ତାକୁ ନିଷିଦ୍ଧ ମାନେ । ପରିଧାନର ଗୋଟିଏ ଶୈଳୀକୁ କିଛି ଲୋକ ଅଶାଳୀନ ମନେ କରୁଥିବାବେଳେ ଅନ୍ୟ କେତେକ ତାକୁ ଆଧୁନିକତା ଭାବନ୍ତି । ସେହିପରି ଉପାର୍ଜନର ଗୋଟିଏ ପନ୍ଥାକୁ ଜଣେ ସତ୍‌ପନ୍ଥା କହେ ତ ଆଉ ଜଣେ ତାକୁ ଅସତ୍ ମନେ କରେ । ଏହିପରି ପ୍ରତ୍ୟେକ କ୍ଷେତ୍ରରେ ମତଭେଦ ରହିଛି । ଅବଶ୍ୟ ଉଭୟ ବାଟରେ ମଣିଷର ଆବଶ୍ୟକତା ପୂରଣ ହୋଇଯିବ ! ଚୋରି ପଇସାରେ କିଣା ହୋଇଥିବା ରୁଟି ଖଣ୍ଡକ ଭୋକ ମେଣ୍ଟାଇବାକୁ ମନା କରିବ ନାହିଁ କିମ୍ବା ଭଉଣୀକୁ ବାହା ହୋଇପଡ଼ିଲେ ସନ୍ତାନ ପ୍ରାପ୍ତିରେ କୌଣସି ବାଧା ସୃଷ୍ଟି ହେବ ନାହିଁ । କିନ୍ତୁ ଏହା ମନୁଷ୍ୟ ଓ ତା' ସମାଜର ଅନିଷ୍ଟ ସାଧନ କରିବ ଏବଂ ଈଶ୍ୱରଙ୍କ ପ୍ରକୋପକୁ ଆମନ୍ତ୍ରଣ କରିବ ।

ତେଣୁ ଠିକ୍ ବାଟ କେଉଁଟି ଏବଂ ଭୁଲ ବାଟ କେଉଁଟି ତାହା କିଏ ନିଷ୍ପତ୍ତି କରିବ ? ସତ୍ ଓ ଅସତ୍ ମଧ୍ୟରେ ଥିବା ପାର୍ଥକ୍ୟ ସମ୍ପର୍କରେ ତାକୁ କିଏ ବତାଇବ ? କିଏ ପୃଥିବୀର କୋଟି କୋଟି ନରନାରୀଙ୍କର ସଦ୍‌ଜୀବନ ଯାପନ ପାଇଁ ମାର୍ଗଦର୍ଶନ କରିବ ଏବଂ ସେମାନଙ୍କର ଆଧ୍ୟାତ୍ମିକ, ଚାରିତ୍ରିକ, ସମାଜିକ, ଅର୍ଥନୈତିକ ଓ ନାଗରିକ ଜୀବନ ପାଇଁ ବିଧି-ବିଧାନ ଦେବ ?

ନର୍ଭୁଲ ମାର୍ଗଦର୍ଶନ କେବଳ ମନୁଷ୍ୟର ସ୍ରଷ୍ଟା ହିଁ କରିପାରିବେ । କାରଣ ସେ ହିଁ ସର୍ବଜ୍ଞ । ସେଇ ହିଁ ସମସ୍ତ ପ୍ରକାର ଦୋଷ ଦୁର୍ବଳତା ରହିତ । କେବଳ ତାଙ୍କରି ଦୃଷ୍ଟି ହିଁ ସମସ୍ତଙ୍କୁ ସମାନ ଭାବେ ଦେଖେ ଏବଂ କେବଳ ସେଇ ହିଁ ସମଗ୍ର ମାନବ ଜଗତର କଲ୍ୟାଣ କାମନା କରନ୍ତି ।

ନିର୍ମାତା ଯେପରି ନିଜ ନିର୍ମିତ ବସ୍ତୁ ପାଇଁ ନିୟମ ଗଢ଼ନ୍ତି, ସେହିପରି ମନୁଷ୍ୟର ସ୍ରଷ୍ଟା ତା' ପାଇଁ ବିଧି-ବିଧାନ ଦିଅନ୍ତି ଏବଂ ମାର୍ଗଦର୍ଶକ ପ୍ରେରଣ କରନ୍ତି । ତାଙ୍କ ଦ୍ୱାରା ପ୍ରକାଶିତ ଗାଇଡ୍ ବହିଟିକୁ 'ଦିବ୍ୟଗ୍ରନ୍ଥ' ଏବଂ ତାଙ୍କ ଦ୍ୱାରା ନିଯୁକ୍ତ ମାର୍ଗଦର୍ଶକଙ୍କୁ 'ଧର୍ମଦୂତ' ବା 'ବାର୍ତ୍ତାବହ' କୁହାଯାଏ । ବିଶ୍ୱର ପ୍ରତ୍ୟେକ ସମ୍ପ୍ରଦାୟ ନିକଟକୁ ଦିବ୍ୟବାର୍ତ୍ତାବହ ଆସିଛନ୍ତି ବୋଲି ଘୋଷଣା କରି କୁର୍‌ଆନ କହେ :

''ଏପରି କୌଣସି ସମ୍ପ୍ରଦାୟ ନାହିଁ ଯାହା ନିକଟକୁ କୌଣସି ସଚେତକ ଆସିନାହାନ୍ତି ।''

କୁର୍‌ଆନ ୩୫ : ୨୪

ଯେପରି ନିର୍ମାତାଙ୍କ ନିୟମ ବିରୁଦ୍ଧରେ କୌଣସି ବସ୍ତୁର ବ୍ୟବହାର କ୍ଷତିକାରକ ହୁଏ, ସେହିପରି ସ୍ରଷ୍ଟାଙ୍କ ଉପଦେଶକୁ ଉପେକ୍ଷା କାରି ଜୀବନ-ଯାପନ କରିବା ମନୁଷ୍ୟ ପାଇଁ ଯେ ନିଶ୍ଚୟ କ୍ଷତିକାରକ ହେବ, ଏଥିରେ ସନ୍ଦେହ ନାହିଁ ।

## ♦ ସ୍ୱର୍ଗ ଓ ନର୍କର ଅସ୍ତିତ୍ୱ ଏକ ଦିବ୍ୟ-ବିଧାନର ପ୍ରମାଣ ଦିଏ

ସ୍ୱର୍ଗ ଓ ନର୍କର ଯେ ଅସ୍ତିତ୍ୱ ରହିଛି, ଏହା ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନ ସମସ୍ତେ ବିଶ୍ୱାସ କରନ୍ତି । ସତ୍‌କର୍ମର ପରିଣାମ ସ୍ୱରୂପ ସ୍ୱର୍ଗଲାଭ ହୁଏ ଏବଂ ଅସତ୍‌କର୍ମ ଯୋଗୁଁ ନର୍କଦଣ୍ଡ ଭୋଗ କରିବାକୁ ପଡ଼େ । ବିଭିନ୍ନ ଧର୍ମଗ୍ରନ୍ଥମାନଙ୍କରେ ସ୍ୱର୍ଗ ଓ ନର୍କର ଉଲ୍ଲେଖ ଏହାର ପ୍ରମାଣ ଦିଏ ଯେ, ଏକ ଦିବ୍ୟ ନିୟମ ଅବଶ୍ୟ ରହିଛି ଯାହାର ଅନୁପାଳନ ବା ଅବମାନନାକୁ ଭିତ୍ତି କରି ବ୍ୟକ୍ତି ପାଇଁ ସ୍ୱର୍ଗ ବା ନର୍କର ନିଷ୍ପତ୍ତି ହୁଏ । ଆଇନ୍ ନ ଦେଇ ଏହାର ଉଲ୍ଲଘଂନକାରୀଙ୍କୁ ଦଣ୍ଡିତ କରିବାର ଅନ୍ୟାୟ ଈଶ୍ୱରଙ୍କଠାରୁ ଆଶା କରାଯାଏ ନାହିଁ ।



ପ୍ରତ୍ୟେକ ମନୁଷ୍ୟ ନ୍ୟାୟ ଚାହେଁ । ଅନ୍ୟ ପ୍ରତି ପଛେ ସେ ଅନ୍ୟାୟ କରୁଥାଉ, ଅନ୍ତତଃ ନିଜ ପାଇଁ ସେ ନ୍ୟାୟ ଆଶା କରେ । ଭୋକିଲା ଲୋକଟି ଯେପରି ଖାଦ୍ୟ ଚାହେଁ, ଶୋଷିଲାଟି ଜଳ ଚାହେଁ, ସେହିପରି ନିର୍ଯାତିତ ଓ ଅତ୍ୟାଚାରିତ ମଣିଷଟି ନ୍ୟାୟ ଚାହେଁ । କୋଟି କୋଟି ଲୋକ ହତ୍ୟା, ଲୁଣ୍ଠନ, ଧର୍ଷଣ ଓ ଶୋଷଣର ଶୀକାର ହୁଅନ୍ତି; କିନ୍ତୁ ସମସ୍ତଙ୍କୁ ସମାଜରେ ନ୍ୟାୟ ମିଳେ ନାହିଁ । ଛୋଟ ଛୁଆଟି ବିପଦରେ ମା'କୁ ଡାକିବା ଭଳି ସେମାନେ ଈଶ୍ୱରଙ୍କୁ ଆକୁଳ ହୋଇ ନ୍ୟାୟ ପାଇଁ ପ୍ରାର୍ଥନା କରନ୍ତି । ତଥାପି ଏଇ ଦୁନିଆରେ ସମସ୍ତଙ୍କୁ ନ୍ୟାୟ ମିଳିପାରେ ନାହିଁ । ପୁଣ୍ୟବନ୍ତକୁ ନ୍ୟାର୍ଯ୍ୟ ପ୍ରତିଦାନ ବା ପାପୀ ପ୍ରତି ସମୁଚିତ ଦଣ୍ଡବିଧାନ ହୋଇପାରେ ନାହିଁ । କାରଣ କୌଣସି ବ୍ୟକ୍ତିର ଭଲ ବା ମନ୍ଦ କର୍ମର ସଂପୂର୍ଣ୍ଣ ଫଳ ଏଇ ଦୁନିଆରେ ପ୍ରକାଶ ପାଇବା ସମ୍ଭବପର ନୁହେଁ । ଅନେକ ଅପରାଧୀ ଅପରାଧ କରି ମଧ୍ୟ ଦଣ୍ଡ ପାଆନ୍ତି ନାହିଁ ଏବଂ ଅସଂଖ୍ୟ ନିରୀହ ଦୁଃଖ କଷ୍ଟ ଭୋଗ କରନ୍ତି । ଦୁଃଖର ତାଡ଼ନାରେ ବିଚରା ନିର୍ଯାତିତ ଓ ନିଷ୍ପେସିତ

ମଣିଷମାନଙ୍କର ହୃଦୟ ନ୍ୟାୟର ଦାବୀରେ ବିଳାପ କରେ । ଅସହାୟ ଆଖିରେ ଆକାଶକୁ ଚାହିଁ ସେମାନେ କହି ଉଠନ୍ତି–ହେ ଈଶ୍ୱର ! ତୁମେ କ'ଣ ନାହଁ ? ଯଦି ଅଛ, ତେବେ ଆମ ଗୁହାରୀ କାହିଁକି ଶୁଣୁ ନାହଁ ?

ଈଶ୍ୱର ଅବଶ୍ୟ ଅଛନ୍ତି ଏବଂ ସବୁ କିଛି ଦେଖୁଛନ୍ତି । ତାଙ୍କ ନିକଟରେ ପ୍ରତ୍ୟେକଟି ଭଲ ବା ମନ୍ଦକର୍ମର ଉଚିତ ପ୍ରତିଦାନ ମଧ୍ୟ ରହିଛି । ଯଦି ଭଲ କର୍ମ ପାଇଁ ଭଲ ପ୍ରତିଦାନ ନ ରହେ କିମ୍ବା ଯଦି ଅନ୍ୟାୟ ଅବିଚାର ପାଇଁ କୌଣସି ଦଣ୍ଡ ବ୍ୟବସ୍ଥା ନ ରହେ, ତେବେ ସତ୍ ଓ ଅସତ୍ ମଧ୍ୟରେ ପ୍ରଭେଦ କ'ଣ ରହିବ ? ସାଧୁ ଓ ଅସାଧୁଙ୍କ ମଧ୍ୟରେ ପାର୍ଥକ୍ୟ କ'ଣ ରହିବ ? ପୁଣ୍ୟାତ୍ମା ଓ ପାପୀ ସମାନ ହୋଇଯିବେ ଏବଂ ଈଶ୍ୱରଙ୍କର ଏ ବିଶାଳ ସୃଷ୍ଟି ଅର୍ଥହୀନ ହୋଇପଡ଼ିବ । ପୁଣି ଈଶ୍ୱରଙ୍କୁ ମାନିବା ବା ନ ମାନିବାରେ କିଛି ତଫାଡ୍ ରହିବ ନାହିଁ । ତେଣୁ ଈଶ୍ୱର ସତ୍ ଓ ଅସତ୍‌କୁ କେବେହେଲେ ସମାନ କରିଦେବେ ନାହିଁ । ଅବଶ୍ୟ ନ୍ୟାୟ ପ୍ରଦାନ କରିବେ; କିନ୍ତୁ ତାହା ଏଇ ଦୁନିଆରେ ନୁହେଁ, ବରଂ ପରଲୋକରେ । ଯେହେତୁ ଇହଲୋକ ଏକ ପରୀକ୍ଷାଗାର, ଏଠାରେ ପାପ-ପୁଣ୍ୟର ଫଳ ପ୍ରକାଶ ପାଏ ନାହିଁ, କାରଣ ବର୍ତ୍ତମାନ ଦୁନିଆର ବ୍ୟବସ୍ଥା ଅନୁଯାୟୀ ଏଠାରେ ମନୁଷ୍ୟଙ୍କୁ ସମୁଚିତ ନ୍ୟାୟ ମିଳିବା ସମ୍ଭବପର ନୁହେଁ । ଏହାର ଅନେକ କାରଣ ରହିଛି । ଏଠାରେ ମୁଁ ଗୋଟିଏ ଉଦାହରଣ ଦେଉଛି :



ଧରନ୍ତୁ, ଜଣେ ଅହଂକାରୀ ଶାସକ ନିଜର ଯଶ ଓ କୀର୍ତ୍ତି ପାଇଁ ରାଜ୍ୟ ପରେ ରାଜ୍ୟ ଜୟ କରି ଚାଲିଲା । ଯୁଦ୍ଧରେ ସେ ହଜାର ହଜାର ଲୋକଙ୍କୁ ହତ୍ୟା କଲା, ଲକ୍ଷ ଲକ୍ଷ ବିକଳାଙ୍ଗ ହେଲେ, ଅଗଣିତ ମହିଳା ବିଧବା ହେଲେ, ଅସଂଖ୍ୟ ପିଲା ଅନାଥ ହେଲେ ଏବଂ କୋଟି କୋଟି ଟଙ୍କାର ସମ୍ପତ୍ତି ନଷ୍ଟ ହେଲା । ଜଣେମାତ୍ର ବ୍ୟକ୍ତିର ଏହି କର୍ମ ଦ୍ୱାରା ଲକ୍ଷ ଲକ୍ଷ ଲୋକ ବର୍ଷ ବର୍ଷ ଧରି ଅକଥନୀୟ ଦୁଃଖ ଦୁର୍ଦ୍ଦଶା ଭୋଗିଲେ ।

ପୃଥିବୀର କେଉଁ ବିଚରାଳୟ ଏମାନେ ପାଇଥିବା ମାନସିକ, ଶାରିରିକ, ଆର୍ଥିକ ତଥା ଅନ୍ୟ କ୍ଷୟକ୍ଷତି ସବୁର ସଠିକ୍ ହିସାବ କରି ଅପରାଧୀର ପ୍ରତ୍ୟେକ ଅପରାଧ ପାଇଁ ତା' ପ୍ରତି ଉଚିତ ଦଣ୍ଡବିଧାନ କରିପାରିବ ? ଅତି ବେଶୀରେ ଆଇନ୍ ତାକୁ ଥରେମାତ୍ର ମୃତ୍ୟୁଦଣ୍ଡ ଦେଇପାରେ । ମୃତ୍ୟୁଦଣ୍ଡ ଦ୍ୱାରା ଅପରାଧୀକୁ ପୁନର୍ବାର ଅପରାଧ କରିବା ପାଇଁ ସୁଯୋଗ ଦିଆଗଲା ନାହିଁ ସତ, କିନ୍ତୁ କେବଳ

ମୃତ୍ୟୁଦଣ୍ଡ ଦ୍ୱାରା ନ୍ୟାୟର ପରିପୂର୍ଣ୍ଣତା ମଧ୍ୟ ହେଲା ନାହିଁ । ଗୋଟିଏ ହତ୍ୟା ପାଇଁ ଥରେ ପ୍ରାଣଦଣ୍ଡ ଯୁକ୍ତିଯୁକ୍ତ, କିନ୍ତୁ ହଜାର ହଜାର ନରସଂହାର ପାଇଁ, ସହସ୍ର ବିଧବା, ବିକଳାଙ୍ଗ ଓ ଅନାଥ ସୃଷ୍ଟି କରିଥିବା ଅପରାଧ ପାଇଁ ମଧ୍ୟ ସମାନ ଦଣ୍ଡ ନ୍ୟାୟସଙ୍ଗତ ନୁହେଁ । ଏପରି ଅପରାଧୀକୁ ସହସ୍ର ପ୍ରାଣଦଣ୍ଡର ଯନ୍ତ୍ରଣା ଦିଆଯିବା ଉଚିତ ଯାହାକି ଏହି ଦୁନିଆରେ ସମ୍ଭବପର ନୁହେଁ । ଏହାଛଡ଼ା ଯେଉଁମାନଙ୍କ ପ୍ରତି ଅନ୍ୟାୟ ଓ ଅତ୍ୟାଚାର କରାଗଲା, ଯେଉଁ ପିତାମାତାମାନେ ସନ୍ତାନ ହରାଇଲେ, ଯେଉଁ ନାରୀମାନେ ବିଧବା ହେଲେ ବା ଯେଉଁ ପିଲାମାନେ ଅନାଥ ହୋଇଗଲେ, ସେମାନଙ୍କୁ ଉପଯୁକ୍ତ କ୍ଷତି ପୂରଣ ଦେବା ମଧ୍ୟ ଦୁନିଆର କୌଣସି ଆଇନ୍ ବ୍ୟବସ୍ଥାରେ ସମ୍ଭବପର ନୁହେଁ ।

ତେଣୁ ନ୍ୟାୟର ପୂର୍ଣ୍ଣତା ପାଇଁ ଏବଂ ଉଚିତ କର୍ମଫଳ ପ୍ରଦାନ କରିବା ପାଇଁ ମୃତ୍ୟୁ ପରେ ଅନ୍ୟ ଏକ ଜଗତର ଆବଶ୍ୟକତା ରହିଛି । ଏହାକୁ ହିଁ 'ପରଲୋକ' କୁହଯାଏ । ଈଶ୍ୱର ସର୍ବ ଶକ୍ତିମାନ । ନ୍ୟାୟର ଏହି ଆବଶ୍ୟକତାକୁ ପୂରଣ କରିବା ପାଇଁ ସେ ମନୁଷ୍ୟକୁ ପୁନର୍ଜୀବୀତ କରିବେ ଏବଂ ସମସ୍ତଙ୍କର ବିଚାର ହେବ । କର୍ମ ଅନୁସାରେ କାହାକୁ ସ୍ୱର୍ଗଲାଭ ହେବ କାହାକୁ ନର୍କଦଣ୍ଡ । ଯେଉଁ ଦିବ୍ୟ ନିୟମ ଅନୁସାରେ ପରଲୋକରେ ମାନବର ଏହି ବିଚାର ପ୍ରକ୍ରିୟା ହେବ ତାହା ଈଶ୍ୱରଙ୍କ ସେହି ଶାଶ୍ୱତ ବିଧି, ଯାହାକୁ ଧର୍ମ କୁହାଯାଏ ।





# ଶାନ୍ତି ପ୍ରତିଷ୍ଠାରେ ଧର୍ମର ଭୂମିକା

ଧର୍ମ ଦ୍ୱାରା କେବଳ ଯେ ପରଲୋକରେ ଶାନ୍ତି ଲାଭ ହୁଏ, ତା' ନୁହେଁ, ଏହାଦ୍ୱାରା ଧରାପୃଷ୍ଠରେ ମଧ୍ୟ ସୁଖଶାନ୍ତି ଆସେ । ପ୍ରକୃତ ଧର୍ମ ହିଁ ମଣିଷକୁ ମଣିଷ କରି ଗଢ଼ି ତୋଳେ ଏବଂ ସମାଜରେ ଶାନ୍ତି ପ୍ରତିଷ୍ଠା କରେ । ଏହା ତା' ଅନ୍ତରରେ ଈଶ୍ୱର ଭକ୍ତି, ପ୍ରେମ, ଦୟା ଓ ପରୋପକାରର ବୀଜ ରୋପଣ କରେ ଏବଂ ଅସତ୍ କର୍ମଗୁଡ଼ିକରୁ ନିବୃତ୍ତ ରହିବାରେ ତାକୁ ସାହାଯ୍ୟ କରେ ।

ପ୍ରତ୍ୟେକ ରାଷ୍ଟ୍ରର ଶାନ୍ତି ଶୃଙ୍ଖଳା ରକ୍ଷା କରିବା ପାଇଁ ନିଜସ୍ୱ ବ୍ୟବସ୍ଥା ଥାଏ ଏବଂ ଏଥିପାଇଁ ଥାନା, ପୋଲିସ୍, ଜେଲ, ଆଇନ୍-ଅଦାଲତ ଓ ଅସ୍ତ୍ରଶସ୍ତ୍ରର ଆୟୋଜନ ମଧ୍ୟ ହୋଇଥାଏ । ଏସବୁ ସତ୍ତ୍ୱେ ଅପରାଧର ସଂଖ୍ୟା ବଢ଼ିଚାଲେ । ବର୍ତ୍ତମାନ ସମୟରେ ଆମ ଦେଶରେ ଯେତେ ଅସ୍ତ୍ରଶସ୍ତ୍ର ରହିଛି, ବିଗତ କେଇ ବର୍ଷ ମଧ୍ୟରେ ଏତେ ନଥିଲା । ପୋଲିସ୍, ଜେଲ ଏବଂ ବିଚାରାଳୟର ସଂଖ୍ୟା ମଧ୍ୟ ପୂର୍ବ ବର୍ଷଗୁଡ଼ିକ ତୁଳନାରେ ଅନେକ ବଢ଼ିଛି । ଏହାଛଡ଼ା ଅପରାଧ ନିରାକରଣ ପାଇଁ ଉନ୍ନତ ମାନର ଅତ୍ୟାଧୁନିକ କଳ-କୌଶଳ ମଧ୍ୟ ପ୍ରୟୋଗ କରାଯାଉଛି । ଉଦ୍ଦେଶ୍ୟ ହେଉଛି ଯେ, ଅପରାଧ ନିୟନ୍ତ୍ରଣ ହେଉ ଏବଂ ଦେଶରେ ଶାନ୍ତି ପ୍ରତିଷ୍ଠା ହେଉ । ତଥାପି ଆମେ ଦେଖୁ ଯେ ଅପରାଧ ଓ ଅପରାଧୀଙ୍କ ସଂଖ୍ୟା କମିବା ପରିବର୍ତ୍ତେ ବଢ଼ିବାରେ ଲାଗିଛି ।

ନ୍ୟାସନାଲ୍ କ୍ରାଇମ ରେକର୍ଡ଼ସ ବ୍ୟୁରୋ (NCRB) ପକ୍ଷରୁ ୨୦୦୬ ବର୍ଷ ପାଇଁ ଜାରି କରାଯାଇ ଥିବା ରିପୋର୍ଟ ଅନୁଯାୟୀ ଭାରତର ୩୫ଟି ବୃହତ୍ ସହର (Mega cities)ରେ ଧର୍ତ୍ତବ୍ୟ ଅପରାଧର ସଂଖ୍ୟା ୨୦୦୫ରେ ୩, ୧୪, ୭୦୮ ଥିବା ସ୍ଥଳେ ୨୦୦୬ରେ ଏହା ୩, ୨୬, ୩୬୩ରେ ପହଞ୍ଚିଛି । ପୂର୍ବ ବର୍ଷ ତୁଳନାରେ ଏହା ଶତକଡ଼ା ୩.୭ ଭାଗ ବୃଦ୍ଧି ପାଇଛି । ବଳାତ୍କାର ୨୦୦୪ରେ ଶତକଡ଼ା ୧୫ ଭାଗ ବୃଦ୍ଧି ପାଇଥିବାବେଳେ ୨୦୦୫ରେ ପୂର୍ବ ବର୍ଷ ଅପେକ୍ଷା ୦.୭ ଭାଗ ଏବଂ ତା' ତୁଳନାରେ ୨୦୦୬ରେ ଶତକଡ଼ା ୫.୪ ଭାଗ ବୃଦ୍ଧି

ପାଇଛି । ଯୌତୁକଜନିତ ହତ୍ୟା ୨୦୦୬ରେ ଶତକଡ଼ା ୧୨.୨ ଭାଗ ଏବଂ ଯୌନ ନିର୍ଯ୍ୟାତନା ପୂର୍ବ ବର୍ଷ ତୁଳନାରେ ୭.୧ ଭାଗ ବୃଦ୍ଧି ପାଇଛି ।+

ଆମ ଓଡ଼ିଶାରେ ମଧ୍ୟ ଅପରାଧର ହାର ଦିନକୁ ଦିନ ବଢ଼ି ଚାଲିଛି । ଉଦାହରଣ ସ୍ୱରୂପ, ବିଗତ ୩ ବର୍ଷ ମଧ୍ୟରେ ରାଜ୍ୟରେ କେତୋଟି ଧର୍ତ୍ତବ୍ୟ ଅପରାଧର ଅଭିବୃଦ୍ଧିର ହାର ନିମ୍ନ ପ୍ରକାର+୧ :

| | ୨୦୦୫ | ୨୦୦୬ | ୨୦୦୭ |
|---|---|---|---|
| ହତ୍ୟା | ୧୦୭୯ | ୧୧୫୯ | ୧୨୧୦ |
| ଦଙ୍ଗା | ୧୫୧୫ | ୧୫୩୫ | ୧୯୭୩ |
| ମୋଟ ଧର୍ତ୍ତବ୍ୟ ଅପରାଧ ଦରଜ | ୬୫,୦୨୯ | ୬୫,୫୫୨ | ୬୭,୦୩୪ |

ଉପରୋକ୍ତ ଅପରାଧ ବୃଦ୍ଧିର କାରଣ ଥାନା, ପୁଲିସ୍, ଜେଲ ବା ବନ୍ଧୁକର ସ୍ୱଳ୍ପତା ନୁହେଁ ବରଂ ଏହାର ମୁଖ୍ୟ କାରଣ ହେଉଛି ଯେ, ଲୋକେ ଆଧ୍ୟାତ୍ମିକ ରୂପେ ସଚେତନ ନୁହନ୍ତି । ଅଧିକାଂଶ ଲୋକଙ୍କ ମନରେ ଈଶ୍ୱରଙ୍କର ଭୟ ନାହିଁ । ଅନେକ ଅଛନ୍ତି ଯିଏ ଈଶ୍ୱରକୁ ମାନନ୍ତି ନାହିଁ । ଆଉ କେତେ ଲୋକ ଈଶ୍ୱରଙ୍କୁ ତ ମାନନ୍ତି; କିନ୍ତୁ କେବଳ ତାଙ୍କର ଅସ୍ତିତ୍ୱକୁ ବା ତାଙ୍କର 'ଏକ' ହେବାକୁ ମାନନ୍ତି । ଆଉ କିଛି ଲୋକଙ୍କର ଧାରଣା ଯେ ଈଶ୍ୱର କେବଳ ପୂଜା-ଉପାସନା ପାଇବା ପାଇଁ ବା ବିପଦ ଆପଦରେ ସାହାଯ୍ୟ କରିବା ପାଇଁ ଅଛନ୍ତି । ମଣିଷର ଦୈନିନ୍ଦିନର କାର୍ଯ୍ୟକଳାପ ସହ ତାଙ୍କର କୌଣସି ସମ୍ପର୍କ ନାହିଁ ।

ଯଦି ମନୁଷ୍ୟର ଈଶ୍ୱରଙ୍କ ନିକଟରେ ଉତ୍ତରଦାୟିତ୍ୱର ଭୟ ନ ରହେ, ତେବେ ସେ ବାଟ ଅବାଟ ନ ମାନି ବେପରୁଆ ମାଡ଼ିଚାଲେ । ତା' ନିକଟରେ ପାପ ଓ ପୁଣ୍ୟ ମଧ୍ୟରେ କୌଣସି ପ୍ରଭେଦ ନଥାଏ । ଯେକୌଣସି ପ୍ରକାରେ ହେଉ, ଜୀବନଟାକୁ ଉପଭୋଗ କରିବା ଏବଂ ନିଜର କାମନାଗୁଡ଼ିକୁ ପୂରଣ କରିନେବା ତା'ର ମୂଳ ଲକ୍ଷ ଥାଏ । ବୋଧହୁଏ ସେ ଭାବେ ଅସଂଖ୍ୟ ନରନାରୀଙ୍କ ଜୀବନ ସହ ଖେଳି, ହତ୍ୟା, ଲୁଣ୍ଠନ, ଶୋଷଣ ଓ ଯାବତୀୟ ଅନ୍ୟାୟ ଅତ୍ୟାଚାର

---

+ NCRB Report - Crime India 2006
Website : www.ncrb.nic.in

+୧ ଦୈନିକ ସମ୍ବାଦ, ତା.୨.୨.୨୦୦୮

କରି ସେ ଦୁନିଆରୁ ଖସିଚାଲିଯିବ ଏବଂ ମୃତ୍ୟୁ ପରେ ତାକୁ ଈଶ୍ୱରଙ୍କର ଅଦାଲତରେ ଉପସ୍ଥିତ ହେବାକୁ ପଡ଼ିବ ନାହିଁ ।

ପ୍ରକୃତରେ ଧର୍ମପ୍ରାଣ ଲୋକେ ହିଁ ଈଶ୍ୱରଙ୍କ ନିକଟରେ ନିଜର ଉତ୍ତରଦାୟିତ୍ୱ ସମ୍ପର୍କରେ ସଦା ସଚେତନ ଥାଆନ୍ତି । ଲୁଚିଛପି ଅପରାଧ କରିବାର ସୁଯୋଗ ପାଇଲେ ସୁଦ୍ଧା ଈଶ୍ୱରଙ୍କର ଭୟ ସେମାନଙ୍କୁ ପାପରୁ ନିବୃତ୍ତ ରଖେ । ସେମାନେ ଭଲ ରୂପେ ଜାଣନ୍ତି ଯେ, ହୁଏତ ସେମାନେ ସମାଜକୁ ଫାଙ୍କି ଦେଇପାରନ୍ତି, ପୋଲିସ ଆଖିରେ ଧୂଳିଦେଇ ପାରନ୍ତି କିମ୍ବା ଆଇନ୍ ହାତରୁ ଖସିଯାଇ ପାରନ୍ତି, କିନ୍ତୁ ସର୍ବଦ୍ରଷ୍ଟା ପରମେଶ୍ୱରଙ୍କ ଆଖିରେ ଧୂଳି ଦେବା ସମ୍ଭବ ନୁହେଁ । ମଣିଷର କୌଣସି କାର୍ଯ୍ୟକଳାପ ତାଙ୍କଠାରୁ ଛପିଯାଏ ନାହିଁ ।

ସାଧାରଣ ଗୋଟିଏ ମୋବାଇଲ୍ ଫୋନର ଉଦାହରଣ ନିଆଯାଉ । ସେଲଫୋନ୍‌ର ଅଫିସ, ଫୋନ୍ ବ୍ୟବହାରକାରୀକୁ ଦେଖେ ମଧ୍ୟ ନାହିଁ । କିନ୍ତୁ ଗ୍ରାହକଟି ଫୋନ୍‌କୁ କିଭଳି ବ୍ୟବହାର କଲା, କେତେବେଳେ କଥା ହେଲା, କାହା ସହ ହେଲା, କେତେ ସେକେଣ୍ଡ ହେଲା, କେତେ ଦୂରରେ ଥିବା ଲୋକ ସହ ହେଲା, ଗ୍ରାହକଟି ସହରରେ ଥାଉ, ଜଙ୍ଗଲରେ ଥାଉ ବା ଘରେ ତାରିକାନ୍ଥ ମଧ୍ୟରେ ଲୁଚିଥାଉ, ସେଲ୍‌ଫୋନର କାର୍ଯ୍ୟାଳୟ ତାର ସମସ୍ତ କଥାର ଗୋଟି ଗୋଟି ରେକର୍ଡ଼ ରଖେ । ସିମ୍ କାର୍ଡ଼ର ବ୍ୟବହାର ତା' ନିର୍ମାତାଠାରୁ ଲୁଚିପାରେ ନାହିଁ । ସାମାନ୍ୟ ଗୋଟିଏ ଛୋଟ ଯନ୍ତ୍ରର ଏଭଳି କରାମତି ଯାହାକୁ ମଣିଷ ଗଢ଼ିଛି । ମଣିଷର ସ୍ରଷ୍ଟା କ'ଣ ତା' କାର୍ଯ୍ୟକଳାପ ସମ୍ବନ୍ଧୀୟ ରେକର୍ଡ଼ ରଖିବା ପାଇଁ ସମର୍ଥ ନୁହନ୍ତି ? ଅବଶ୍ୟ ସେ ରଖୁଛନ୍ତି । ପ୍ରତ୍ୟେକ ବ୍ୟକ୍ତିର ସମସ୍ତ ଛୋଟ-ବଡ଼ କର୍ମର ଗୋଟି ଗୋଟି ରେକର୍ଡ଼ ତାଙ୍କ ନିକଟରେ ରହେ । ପରଲୋକରେ ସେ ଏହା ଦେଖି ମଧ୍ୟ ପାରିବ, ଠିକ ସେହିପରି ଯେପରି ସେ ଅନେକ ବର୍ଷ ତଳର କୌଣସି ସ୍ମରଣୀୟ ଘଟଣାର ଲାଇଭ୍ ଭିଡ଼ିଓ ରେକର୍ଡ଼ିଂ ଦେଖେ । ଅବିକଳ ସେହି ଚିତ୍ର, ସେହି ସ୍ଥାନ, ସେହି କାଳ, ସେହି ପାତ୍ର—ସବୁ କିଛି ଅବିକଳ ସମାନ ।

ବିଦ୍ୱାନ୍‌ମାନେ ଏହା ଭଲ ରୂପେ ଜାଣନ୍ତି । ଈଶ୍ୱର ବିଶ୍ୱାସ ସେମାନଙ୍କୁ କୁକର୍ମରୁ ନିବୃତ୍ତ ରଖେ । ଯେଉଁଠି ଆଇନର ଭୟ ନଥାଏ ବା ନିଜ ସମ୍ମାନ ହାନିର ଆଶଙ୍କା ମଧ୍ୟ ନଥାଏ, ସେଠାରେ ଈଶ୍ୱର ବିଶ୍ୱାସ ବ୍ୟତୀତ ଆଉ କେଉଁ ଶକ୍ତି ମନୁଷ୍ୟକୁ ପାପରୁ କ୍ଷାନ୍ତ ରଖିପାରିବ ? ତେଣୁ, ଈଶ୍ୱରପ୍ରଦତ୍ତ ଧର୍ମମାର୍ଗର ଅନୁସରଣ ଦ୍ୱାରା ସମାଜରେ ଅବଶ୍ୟ ଶାନ୍ତି ପ୍ରତିଷ୍ଠା ହୁଏ ।

# ଗୋଟିଏ ଜାତି-ଗୋଟିଏ ଧର୍ମ

ପୂର୍ବ ଆଲୋଚନାରୁ ଆମେ ଜାଣିଲୁ ଯେ ଧର୍ମ ଈଶ୍ୱର ବିଶ୍ୱାସ ଉପରେ ଆଧାରିତ ଏକ ଜୀବନଶୈଳୀ । ବର୍ତ୍ତମାନ ଦେଖିବା, ମାନବଜାତି ପାଇଁ କେତୋଟି ଜୀବନଶୈଳୀର ଆବଶ୍ୟକତା ରହିଛି ଏବଂ ଈଶ୍ୱର କେତୋଟି ଧର୍ମ ନିରୂପଣ କରିଛନ୍ତି—ଗୋଟିଏ ବା ଅନେକ ?

ଅନେକ ଭାବନ୍ତି ଧର୍ମ ଅନେକ ରହିଛି । ଧର୍ମ ଏକାଧିକ ହୁଅନ୍ତା ଯଦି ଈଶ୍ୱର ମଧ୍ୟ ଅନେକ ଥାଆନ୍ତେ । ରାଜା ଅନେକ ହେଲେ ଆଇନ୍ ମଧ୍ୟ ଅନେକ ହୋଇପାରେ । କିନ୍ତୁ 'ଈଶ୍ୱର ଏକ' ବୋଲି ବିଶ୍ୱର ସମସ୍ତ ପ୍ରମୁଖ ଧର୍ମଗ୍ରନ୍ଥଗୁଡ଼ିକ ଘୋଷଣା କରୁଛନ୍ତି । ଏହା ଏକ ଚିରନ୍ତନ ସତ୍ୟ ।

ହିନ୍ଦୁ, ମୁସଲମାନ୍, ଶିଖ୍ ବା ଖ୍ରୀଷ୍ଟିୟାନମାନଙ୍କୁ ଭିନ୍ନ ଭିନ୍ନ ଈଶ୍ୱର ସୃଷ୍ଟି କରିନାହାନ୍ତି କିମ୍ବା ଏମାନଙ୍କ ପାଳନକର୍ତ୍ତା ମଧ୍ୟ ପୃଥକ୍ ନୁହନ୍ତି । ସମସ୍ତଙ୍କୁ ସେଇ ଜଣେ ଆହାର ଦିଅନ୍ତି, ଯିଏ ପଶୁ-ପକ୍ଷୀ ଓ ଅନ୍ୟ ପ୍ରାଣୀଙ୍କୁ ଆହାର ଦିଅନ୍ତି । ତାଙ୍କରି କୃପା ବଳରେ ପ୍ରତ୍ୟେକ ଜୀବିତ । ଯଦି ସମସ୍ତଙ୍କର ଈଶ୍ୱର ଏକ, ତେବେ ତାଙ୍କ ଦ୍ୱାରା ନିର୍ଦ୍ଧାରିତ ଧର୍ମ ବ୍ୟବସ୍ଥା ଅନେକ କିପରି ହେବ ?

ଦ୍ୱିତୀୟତଃ, ଧର୍ମ ହୁଏତ ଅନେକ ହୁଅନ୍ତା । ଯଦି 'ମାନବଜାତି' ଗୋଟିଏ ନ ହୋଇ ଅନେକ ହୁଅନ୍ତା । ପ୍ରତ୍ୟେକ ଜାତିର ପ୍ରବୃତ୍ତି ଓ ଦୋଷ-ଦୁର୍ବଳତା ଅନୁସାରେ ସ୍ୱତନ୍ତ୍ର ବିଧି-ବିଧାନର ଆବଶ୍ୟକତା ହୁଅନ୍ତା । ଉଦାହରଣ ସ୍ୱରୂପ, ଗାଈମାନଙ୍କ ପାଇଁ ଯେମିତି ଗୁହାଳ ବ୍ୟବସ୍ଥା ଦରକାର ହୁଏ, ବାଘ-ସିଂହ ପାଇଁ ଠିକ୍ ସେହିପରି ହୁଏନାହିଁ କିମ୍ବା ସର୍ପ ଜାତି ପାଇଁ ଆବଶ୍ୟକ ହେଉଥିବା ସାବଧାନତା ବିରାଡ଼ି ଜାତି ପାଇଁ ଲାଗୁ ହୁଏ ନାହିଁ ।

ମନୁଷ୍ୟ ଗୋଟିଏ ଜାତି ଏବଂ ମାନବସମାଜ ଗୋଟିଏ ପରିବାର—'ବସୁଧୈବ କୁଟୁମ୍ବକମ୍' ।

ପବିତ୍ର କୁର୍‌ଆନ ଅନୁସାରେ :

"ମାନବସମାଜ ଗୋଟିଏ ସମ୍ପ୍ରଦାୟ ।"

କୁର୍‌ଆନ ୨:୨୧୩

ଏକା ରକ୍ତମାଂସରେ ସବୁ ମଣିଷ ଗଢ଼ା । ସଭିଙ୍କ ଏକା ପ୍ରକୃତି ଏବଂ ଏକା ମାନବୀୟ ଦୁର୍ବଳତା । ବଂଶ, ଦେଶ, ଭାଷା ଓ ବର୍ଣ୍ଣର ପାର୍ଥକ୍ୟ ସତ୍ତ୍ୱେ ପ୍ରାକୃତିକ ଆବଶ୍ୟକତା ସଭିଙ୍କର ସମାନ । ସମସ୍ତଙ୍କର ଇନ୍ଦ୍ରିୟ ଓ ଅଙ୍ଗ ପ୍ରତ୍ୟେଙ୍ଗଗୁଡ଼ିକର କାର୍ଯ୍ୟଧାରା ଏକା । ସଭିଙ୍କର ବିଚାରବୁଦ୍ଧି ଓ ଆତ୍ମନିୟନ୍ତ୍ରଣ ଶକ୍ତି ଥାଏ । ତେଣୁ ସମସ୍ତଙ୍କ ପାଇଁ ଗୋଟିଏ ପ୍ରାକୃତିକ ନିୟମ ରହିବା ଉଚିତ । ଯଦି ସତ୍ୟ, ନ୍ୟାୟ, ଦୟା ଓ ପ୍ରେମ ପୁଣ୍ୟକାର୍ଯ୍ୟ, ତେବେ ପୃଥିବୀର ପ୍ରତ୍ୟେକ ମନୁଷ୍ୟ ପାଇଁ ଏହା ପୁଣ୍ୟ ହିଁ ହେବ । ଯଦି ହତ୍ୟା, ଲୁଣ୍ଠନ ଓ ବ୍ୟଭିଚାର ପାପ, ତେବେ ସବୁ ମନୁଷ୍ୟଙ୍କ ପାଇଁ ସମାନ ଭାବରେ ନିଷିଦ୍ଧ ରହିବ । ଅନ୍ତତଃ ଧର୍ମର ମୌଳିକ ଶିକ୍ଷାଗୁଡ଼ିକ ସମସ୍ତଙ୍କ ପାଇଁ ସମାନ ରହିବା ଉଚିତ । ତେଣୁ, ଗୋଟିଏ ଜାତିର ପ୍ରାଣୀ ପାଇଁ ପୃଥକ୍ ପୃଥକ୍ ବିଧି-ବିଧାନର ଯଥାର୍ଥତା କ'ଣ ?

ଏହା ସତ୍ତ୍ୱେ, ହୁଏତ ଜଣେ ଈଶ୍ୱର ଗୋଟିଏ ପରିବାର ପାଇଁ ଏକାଧିକ ଧର୍ମ-ବ୍ୟବସ୍ଥା ଦେଇଥାଆନ୍ତେ, ଯଦି ସେ ମାନବ ଜାତିର ଅମଙ୍ଗଳ ଚାହାନ୍ତେ । ଯଦି ଈଶ୍ୱର ଚାହାନ୍ତେ ଯେ, ଲୋକେ ପରସ୍ପର ମଧ୍ୟରେ ଝଗଡ଼ା କରନ୍ତୁ, ଯୁଦ୍ଧ ଓ ରକ୍ତପାତ କରନ୍ତୁ, ସାମ୍ପ୍ରଦାୟୀକ ଦଙ୍ଗା କରନ୍ତୁ, ସମାଜରେ ପ୍ରେମ ପରିବର୍ତ୍ତେ ଘୃଣାର ପ୍ରସାର ହେଉ ଏବଂ ତାଙ୍କ ଧରିତ୍ରୀ ଅଶାନ୍ତ ରହୁଥାଉ, ତେବେ ହୁଏତ ସେ ଦଶ-ପଚାଶଟା 'ଧର୍ମ' ଦେଇ ଦେଇଥାଆନ୍ତେ ଯେ, ଏଗୁଡ଼ିକ ନେଇ ଝଗଡ଼ା କରୁଥାଅ । କିନ୍ତୁ ଈଶ୍ୱର ମଙ୍ଗଳମୟ ଓ କଲ୍ୟାଣକାରୀ । ସେ ଜଗତର ମଙ୍ଗଳ ଚାହାନ୍ତି—ଶାନ୍ତି ଚାହାନ୍ତି । ତେଣୁ ଈଶ୍ୱରଙ୍କର ଦ୍ୱାରା ମାନବ ପରିବାର ପାଇଁ ଏକାଧିକ ଧର୍ମ ବ୍ୟବସ୍ଥା ଦିଆଯାଇଛି ବୋଲି କହିବା ଯୁକ୍ତିସଙ୍ଗତ ନୁହେଁ ।

ଏହାଛଡ଼ା ଆମେ ଦେଖୁ ଯେ, ବିଶ୍ୱର ପ୍ରମୁଖ ଧର୍ମଗ୍ରନ୍ଥଗୁଡ଼ିକର ଶିକ୍ଷାରେ ଆଶ୍ଚର୍ଯ୍ୟଜନକ ଭାବେ ସମାନତା ରହିଛି । ଧର୍ମର ଅନୁଗାମୀମାନେ ପ୍ରାକ୍ଟିକାଲ ଭାବେ କ'ଣ କରନ୍ତି, ନ କରନ୍ତି, ତାହା ଭିନ୍ନ କଥା । କିନ୍ତୁ ବିଭିନ୍ନ ଧର୍ମ ଗ୍ରନ୍ଥଗୁଡ଼ିକର ଶିକ୍ଷାରେ ଅଧିକାଂଶ ସମାନତା ରହିଛି । ସମସ୍ତ ଦିବ୍ୟଗ୍ରନ୍ଥଗୁଡ଼ିକ ଏକେଶ୍ୱରବାଦର ଶିକ୍ଷା ଦେଇଛନ୍ତି । ନ୍ୟାୟ ଓ ନୈତିକତାର ସିଦ୍ଧାନ୍ତ ଏବଂ

ମାନବିକତାର ନୀତିଶିକ୍ଷାଗୁଡ଼ିକ ସବୁ ଦିବ୍ୟଗ୍ରନ୍ଥରେ ରହିଛି । ପ୍ରେମ, ସତ୍ୟ, ଦୟା ଓ ପରୋପକାରର ଶିକ୍ଷା ସବୁ ଗ୍ରନ୍ଥର ସମାନ । ମିଥ୍ୟା, କପଟ, ଚୋରି, ଲାଞ୍ଚ, ଗର୍ବ, ଅହଂକାର, ହତ୍ୟା, ଧର୍ଷଣ, ଶୋଷଣକୁ ସବୁ ଗ୍ରନ୍ଥ ନିଷିଦ୍ଧ କରିଛି । ଗୁରୁଜନଙ୍କ ସେବା, ଜ୍ଞାତି-କୁଟୁମ୍ବଙ୍କର ସହାୟତା, ଦୁଃଖୀ-ରଙ୍କିଙ୍କ ପ୍ରତି ଉଦାରତା ଏବଂ ଆଚାର ବ୍ୟବହାରରେ ଶିଷ୍ଟାଚାର ଆଦିର ନୀତି ଉପଦେଶ ମଧ୍ୟ ସବୁ ଗ୍ରନ୍ଥରେ ରହିଛି । କୌଣସି ଧର୍ମଗ୍ରନ୍ଥ ସଦାଚାରକୁ ପାପ କହିନାହିଁ କିମ୍ବା ଅନ୍ୟାୟ ଅବିଚାରକୁ 'ଧର୍ମ' ଆଖ୍ୟା ଦେଇନାହିଁ । ପ୍ରମୁଖ ଧର୍ମଗ୍ରନ୍ଥଗୁଡ଼ିକରେ ଥିବା ଶିକ୍ଷାରେ ଏତେ ବିପୁଳ ପରିମାଣରେ ସମାନତା ସେମାନଙ୍କ ମଧ୍ୟରେ ଥିବା ନିବିଡ଼ ସମ୍ପର୍କର ସ୍ପଷ୍ଟ ପ୍ରମାଣ ଦିଏ ।

ଓଡ଼ିଆ ସାହିତ୍ୟର ଜଣେ ଖ୍ୟାତନାମା ଲେଖକ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ ମଧ୍ୟ ତାଙ୍କ ପୁସ୍ତକରେ 'ବହୁ ସମ୍ପ୍ରଦାୟ ଏକ ଧର୍ମ' ଶୀର୍ଷକରେ ଏକଥା ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି :

> ''ସବୁ ଧର୍ମରେ ଏପରି କିଛି ସାରକଥା ରହିଛି, ଯାହାକି ଆମ ସମସ୍ତଙ୍କ ପକ୍ଷରେ ପାଳନୀୟ । ବେଦ, କୁର୍‌ଆନ, ବାଇବେଲ, ଗ୍ରନ୍ଥ ସାହେବ, ଜେନ୍ଦାଭେସ୍ତା ପ୍ରଭୃତି ଧର୍ମଶାସ୍ତ୍ରମାନଙ୍କରେ ଯେଉଁସବୁ ଧର୍ମ ବା ନୀତିବାକ୍ୟମାନ ରହିଛି, ସେସବୁକୁ ଅଧ୍ୟୟନ କଲେ ଜଣାଯାଏ, ସବୁ ଧର୍ମ ପ୍ରାୟ ସମାନ କଥା କହିଛନ୍ତି । ଏପରିକି ସବୁ ଧର୍ମ ଶାସ୍ତ୍ରରେ ନବେ ଭାଗ ସମାନ ସତ୍ୟ ଓ ନୀତି ବୟାନ କରାଯାଇଛି । ଆଉ ଯେଉଁ ଦଶଭାଗ ଅସମାନ କଥା ରହିଛି, ତାହା କେବଳ ସ୍ଥାନ-କାଳ-ପାତ୍ରର ବିଭେଦ ଯୋଗୁଁ ହୋଇଛି ।''+

ଏକଥା ଉଲ୍ଲେଖଯୋଗ୍ୟ ଯେ ଯଦି ମାନବସମାଜ ପାଇଁ ଭିନ୍ନ ଭିନ୍ନ ସମୟରେ ଏବଂ ବିଭିନ୍ନ ସ୍ଥାନରେ ଅନେକ ଧର୍ମ ଦିଆଯାଇ ଥାଆନ୍ତା, ତେବେ ଶହ ଶହ ବର୍ଷର ବ୍ୟବଧାନରେ ପୃଥିବୀରେ ବିଭିନ୍ନ ଅଞ୍ଚଳରେ ପ୍ରକଟିତ ହୋଇଥିବା ଧର୍ମଗ୍ରନ୍ଥଗୁଡ଼ିକରେ ଏତେ ବିପୁଳ ପରିମାଣରେ ସମାନତା ନ ଥାନ୍ତା । ପ୍ରମୁଖ

+ ସନାତନ ଧର୍ମର ସାରକଥା, ପ୍ରକାଶକ-ମନୋଜ କୁମାର ମହାପାତ୍ର, ଗ୍ରନ୍ଥ ମନ୍ଦିର, ବିନୋଦ ବିହାରୀ, କଟକ-୨, ପୃ: ୨୮

ଧର୍ମଗ୍ରନ୍ଥଗୁଡ଼ିକର ଶିକ୍ଷାରେ ଯେଉଁ 'ନବେ ଭାଗ' ସମାନତା ରହିଛି, ତାହା ପ୍ରକୃତରେ ମାନବଜାତି ପାଇଁ ଈଶ୍ୱରଙ୍କର 'ଭିନ୍ନ ଭିନ୍ନ' ଧର୍ମ ବ୍ୟବସ୍ଥା ଯୋଗୁଁ ନୁହେଁ, ବରଂ 'ଗୋଟିଏ' ଧର୍ମ ବ୍ୟବସ୍ଥା ଯୋଗୁଁ ରହିଛି ।

ସତ୍ୟ ଏହି ଯେ, ବ୍ରହ୍ମାଣ୍ଡର ଅଧୀଶ୍ୱର ଜଣେ ଏବଂ ମାନବଜାତି ପାଇଁ ତାଙ୍କ ଦ୍ୱାରା ନିର୍ଦ୍ଧାରିତ ଜୀବନଶୈଳୀ ମଧ୍ୟ ଗୋଟିଏ, ଯାହା ହେଉଛି 'ଧର୍ମ' । ଏହାର ସିଦ୍ଧାନ୍ତ, ମୌଳିକ ନୀତି-ନିୟମ ବା ଉଦ୍ଦେଶ୍ୟ କେବେ ମଧ୍ୟ ବଦଳେ ନାହିଁ । ସୃଷ୍ଟିର ଆରମ୍ଭରୁ ମାନବଜଗତ ପାଇଁ ଯେଉଁ ମୌଳିକ ଜୀବନ-ବ୍ୟବସ୍ଥା ଦିଆଯାଇଥିଲା, ସେହି ସତ୍ୟ ସନାତନ ଧର୍ମର ପ୍ରଚାର ଓ ପ୍ରସାର ପାଇଁ ସବୁ ଦିବ୍ୟଗ୍ରନ୍ଥଗୁଡ଼ିକ ଅବତରଣ ହୋଇଛି ଏବଂ ସମସ୍ତ ଧର୍ମ ପ୍ରବର୍ତ୍ତକ ନିଯୁକ୍ତ ହୋଇଛନ୍ତି । ଏହା ମାର୍ଗଦର୍ଶନ ପାଇଁ ଈଶ୍ୱରଙ୍କ ଏକ ପରମ୍ପରା ।

ଆସନ୍ତୁ ଦେଖିବା ଯେ, ପ୍ରମୁଖ ଧର୍ମଗ୍ରନ୍ଥଗୁଡ଼ିକ ଧର୍ମର ସଂଖ୍ୟା ବିଷୟରେ କ'ଣ କହୁଛନ୍ତି । ପ୍ରାଚୀନ ଧର୍ମଗ୍ରନ୍ଥ ବେଦରେ ଗୋଟିଏ ଧର୍ମମାର୍ଗ ଥିବା ବିଷୟରେ ସ୍ପଷ୍ଟ କୁହାଯାଇଛି । ସୁତରାଂ ଋଗ୍‌ବେଦ କହେ :

> "ଏହି ସଂସାରରେ ମନୁଷ୍ୟମାନେ ଦୁଇ ପ୍ରକାରର ହୁଅନ୍ତି—ଏକ ଧାର୍ମିକ ଏବଂ ଅନ୍ୟ ପ୍ରକାର ହେଉଛନ୍ତି ପାପୀ । ଏ ଉଭୟ ଭଲ ଭାବରେ ପୃଥକ ପୃଥକ୍ ସ୍ଥାନ ଏବଂ ଆଚରଣ ଯୋଗ୍ୟ ଅଟନ୍ତି । ଅର୍ଥାତ୍ ଯେ ଧାର୍ମିକ ଅଟନ୍ତି ସେ ଧର୍ମାତ୍ମାମାନଙ୍କର ଅନୁକରଣ ଦ୍ୱାରା ହିଁ ଧର୍ମ ମାର୍ଗରେ ଚଳନ୍ତି ଏବଂ ଯେ ଦୁଷ୍ଟାଚରଣକାରୀ ପାପୀ ଅଟନ୍ତି ସେ ଅଧର୍ମୀ ଦୁଷ୍ଟଜନଙ୍କ ଆଚରଣ ଦ୍ୱାରା ହିଁ ଅଧର୍ମରେ ଚଳନ୍ତି । କୌଣସି ଧର୍ମାତ୍ମା କଦାପି ଅଧର୍ମୀ ଦୁଷ୍ଟଜନଙ୍କ ମାର୍ଗରେ ଚଳିବା ଉଚିତ ନୁହେଁ ଏବଂ ଅଧର୍ମୀ ଦୁଷ୍ଟଜନ ନିଜର ଦୁଷ୍ଟତାକୁ ତ୍ୟାଗ କରି ଧାର୍ମିକଙ୍କ ମାର୍ଗରେ ଚଳିବା ଶ୍ରେୟସ୍କର ଅଟେ । ଏହି ପ୍ରକାରେ ପ୍ରତ୍ୟେକ ଜାତିଙ୍କ ପଛରେ ଧାର୍ମିକ ଏବଂ ଅଧାର୍ମିକ ଦୁଇଟି ମାର୍ଗ ରହିଛି ଏବଂ ତହିଁରେ ଧାର୍ମିକ ସୁଖ ଓ ଅଧର୍ମୀ ଦୁଷ୍ଟ ସଦା ଦୁଃଖକୁ ପ୍ରାପ୍ତ ହେଉଛନ୍ତି ।"

ଋଗବେଦ, ପ୍ରଥମ ମଣ୍ଡଳ, ସୂକ୍ତ ୧୨୫, ମନ୍ତ୍ର-୭

ଯଦୁର୍ବେଦ କହେ :

''ହେ ବିଦ୍ୱାନ୍‌ଗଣ ! ଯେପରି ଅକାଶରେ ସୂର୍ଯ୍ୟଙ୍କର ନିର୍ମଳ ମାର୍ଗ ଅଛି, ସେହିପରି ତୁମ୍ଭେମାନେ ଉପଦେଶ ଏବଂ ଅଧ୍ୟାପନ ଦ୍ୱାରା ବିଦ୍ୟା, ଧର୍ମ ଏବଂ ସୁଶୀଳତା ଦାନକାରୀ ମାର୍ଗର ପ୍ରଚାର କର ।''

ଯଜୁର୍ବେଦ ୩୪ : ୨୭

ବେଦରେ ସୁଶୀଳତା ଦାନକାରୀ ମାର୍ଗର ତୁଳନା ସୂର୍ଯ୍ୟର 'ନିର୍ମଳ ମାର୍ଗ' ସହ କରାଯାଇଛି । ସୂର୍ଯ୍ୟର ଗୋଟିଏ ହିଁ ମାର୍ଗ । ତେଣୁ ବେଦ ଅନୁସାରେ ଧର୍ମମାର୍ଗ ଗୋଟିଏ ।

ଗୋଟିଏ ଧର୍ମମାର୍ଗର ସୂଚନା ଦେଇ ବାଇବେଲ ମହାମାନ୍ୟ ଧର୍ମଦୂତ ଦାଉଦଙ୍କ ଗୀତ ଉଦ୍ଧାର କରି କହୁଛି :

''ହେ ସଦାପ୍ରଭୋ, ମୋହର ଶତ୍ରୁଗଣ ସକାଶୁ ମୋତେ ତୁମ୍ଭର ମାର୍ଗ ଶିଖାଅ ଓ ସରଳ ପଥରେ ମୋତେ କଢ଼ାଇ ନିଅ ।''

ବାଇବଲ, ଗୀତ ସଂହିତା ୨୭-୧୧

ଅନ୍ୟ ଏକ ସ୍ଥାନରେ ଉଲ୍ଲେଖ ଅଛି :

''ତୁମ୍ଭ ଆଜ୍ଞା-ପଥରେ ମୋତେ ଗମନ କରାଅ, କାରଣ ତହିଁରେ ମୁଁ ଆନନ୍ଦ କରେ । ଲୋଭ ପ୍ରତି ନୁହେଁ, ମାତ୍ର ତୁମ୍ଭ ପ୍ରମାଣ ବାକ୍ୟ ପ୍ରତି ମୋ' ଚିତ୍ତର ସ୍ନେହ ଜନ୍ମାଅ । ଅସାର ଦର୍ଶନରୁ ମୋହର ଚକ୍ଷୁ ଫେରାଅ ଓ ତୁମ୍ଭ ପଥରେ ମୋତେ ସଚେତ କର ।''

ବାଇବଲ, ଗୀତ ସଂହିତା ୧୧୯ : ୩୫-୩୭

ପବିତ୍ର କୁର୍‌ଆନ ମଧ୍ୟ ଗୋଟିଏ ଧର୍ମ ବିଷୟରେ ଘୋଷଣା କରି କହିଛି :

''ସେ ତୁମ୍ଭମାନଙ୍କ ପାଇଁ ସେଇ ଧର୍ମ ନିର୍ଦ୍ଧାରିତ କରିଛନ୍ତି ଯାହାର ଆଦେଶ ସେ ନୁହ୍‌ଙ୍କୁ ଦେଇଥିଲେ ଏବଂ ଯାହା ଆମ୍ଭେ ଏବେ ତୁମ ପ୍ରତି ଦୈବୀବାଣୀ କରିଅଛୁ ଏବଂ ଯାହାର ଆଦେଶ ଆମ୍ଭେ ଇବ୍ରାହିମ, ମୁସା ଏବଂ ଇସା (ଯୀଶୁଖ୍ରୀଷ୍ଟ)ଙ୍କୁ ଦେଇଥିଲୁ ଏବଂ

ତାହା ଏହି ଯେ ଏହି ଧର୍ମରେ ଅଟଳ ରୁହ ଏବଂ ଏଥିରେ ବିଭାଜନ କର ନାହିଁ ।''

କୁର୍‌ଆନ ୪୨ : ୧୩

ଯେକୌଣସି ଦିଗରୁ ବିଚାର କଲେ ମଧ୍ୟ ମାନବଜାତି ପାଇଁ ଅନେକ ନୁହେଁ ବରଂ ଗୋଟିଏ ଜୀବନ-ଶୈଳୀର ଯଥାର୍ଥତା ରହିଛି । ଗୋଟିଏ ଧର୍ମ ବ୍ୟବସ୍ଥା ହିଁ ''ବସୁଧୈବ କୁଟୁମ୍ବକମ୍''ର ଯଥାର୍ଥତା ପ୍ରତିପାଦନ କରିପାରିବ ତଥା ବିଶ୍ୱ ଭ୍ରାତୃତ୍ୱ ପ୍ରତିଷ୍ଠା କରିପାରିବ । କିନ୍ତୁ ଈଶ୍ୱରଙ୍କ ଦିବ୍ୟ ଧର୍ମଟି ଅପଭ୍ରଂଶ ହୋଇ ଅନେକ ଧର୍ମମତବାଦ ସୃଷ୍ଟି ହୋଇଛି । ପ୍ରତ୍ୟେକ ଧର୍ମ ମଧ୍ୟ ଅନେକ ଉପଧର୍ମ ଓ ଶାଖା-ପ୍ରଶାଖାରେ ବିଭକ୍ତ । ବିଭିନ୍ନ ଯୁଗର ଅସାଧୁ ଧର୍ମଗୁରୁମାନଙ୍କ ଦ୍ୱାରା ଦିବ୍ୟଗ୍ରନ୍ଥଗୁଡ଼ିକର ଶିକ୍ଷାରେ ବ୍ୟାପକ ପରିବର୍ତ୍ତନ ଏବଂ ଏଥିରେ ବିଭିନ୍ନ ଦର୍ଶନ ତଥା କାଳ୍ପନିକ କାହାଣୀର ଅପମିଶ୍ରଣର ଏହା ପରିଣାମ । ବର୍ତ୍ତମାନ ଯେଉଁ ସଂପ୍ରଦାୟ ନିକଟରେ ଯାହା କିଛି ଧର୍ମ ବିଧାନ ରୂପେ ରହିଛି ସେ ତାକୁ ହିଁ ସବୁକିଛି ବୋଲି ମାନୁଛି । ଈଶ୍ୱର ପବିତ୍ର କୁର୍‌ଆନରେ ଏହି ସତ୍ୟଟିକୁ ଉନ୍ମୋଚନ କରି କହିଛନ୍ତି :

> ''ତୁମ୍ଭମାନଙ୍କର ଏହି (ଧର୍ମ) ସମ୍ପ୍ରଦାୟ ସମୂହ ପ୍ରକୃତରେ ଗୋଟିଏ ହିଁ ସମ୍ପ୍ରଦାୟ ଏବଂ ମୁଁ ତୁମ୍ଭମାନଙ୍କର ପାଳନକର୍ତ୍ତା । ସୁତରାଂ ମୋ ପ୍ରତି ଭୟ ରଖ । ପରେ ଲୋକମାନେ ନିଜ ଭିତରେ ଧର୍ମ ବିଧାନଗୁଡ଼ିକୁ ଭାଗ ଭାଗ କରିଦେଲେ (ଏବଂ) ପ୍ରତ୍ୟେକ ଗୋଷ୍ଠୀ ପାଖରେ ଯାହାକିଛି ରହିଛି, ସେ ସେଇଥିରେ ମଗ୍ନ ।''

କୁର୍‌ଆନ ୨୩ : ୫୨-୫୩

ଅନେକ ଲୋକ କହନ୍ତି ଯେ, ଧର୍ମମାର୍ଗ ଅନେକ ରହିଛି ଏବଂ ସମସ୍ତ ମାର୍ଗ ଠିକ୍ । ଈଶ୍ୱର ପ୍ରାପ୍ତିର ବିଭିନ୍ନ ବାଟ ରହିଛି । ଯେଉଁ ବାଟରେ ଗଲେ ମଧ୍ୟ ଲକ୍ଷ୍ୟସ୍ଥଳରେ ପହଞ୍ଚି ହେବ । ଉଦାହରଣ ଦିଅନ୍ତି ଯେ, ଦିଲ୍ଲୀ ଯିବାକୁ ହେଲେ ଯେପରି ରେଳପଥ, ଆକାଶପଥ ବା ସଡ଼କପଥରେ ଯାଇ ମଧ୍ୟ ଜଣେ ଦିଲ୍ଲୀରେ ପହଞ୍ଚି ପାରିବ, ସେହିପରି ଧର୍ମର ଯେକୌଣସି ମାର୍ଗ ଅନୁସରଣ କଲେ ମଧ୍ୟ ଜଣେ ଈଶ୍ୱର ଲାଭ କରିପାରିବ । ପ୍ରକୃତ ଉଦ୍ଦେଶ୍ୟ ହେଲା ଲକ୍ଷ୍ୟସ୍ଥଳୀରେ ପହଞ୍ଚିବା । ବାଟ ଏକ ମାଧ୍ୟମ ମାତ୍ର ।

ଏଥିରେ କୌଣସି ସନ୍ଦେହ ନାହିଁ ଯେ, ପ୍ରତ୍ୟେକ ମଣିଷ ଧର୍ମକ୍ଷେତ୍ରରେ ସମ୍ପୂର୍ଣ୍ଣ ସ୍ୱାଧୀନ । ନିଜ ପାଇଁ ଧର୍ମ ମାର୍ଗ ବାଛିବାର ଅଧିକାର ସମସ୍ତଙ୍କର ଅଛି । ଆମ ଦେଶର ସମ୍ବିଧାନ ସମସ୍ତଙ୍କୁ ଏହି ଅଧିକାର ପ୍ରଦାନ କରିଛି ଏବଂ ଈଶ୍ୱର କୁର୍‌ଆନରେ ମଧ୍ୟ ଏହା ସ୍ପଷ୍ଟ ଘୋଷଣା କରିଛନ୍ତି–

"ଧର୍ମ ସଂକ୍ରାନ୍ତରେ କୌଣସି ବାଧ୍ୟ-ବାଧ୍ୟକତା ନାହିଁ । (କାରଣ) ସଦ୍‌ମାର୍ଗକୁ ଅସଦ୍ ମାର୍ଗରୁ ପୃଥକ୍ କରିଦିଆଯାଇଛି ।"

କୁର୍‌ଆନ ୨ : ୨୫୬

କିନ୍ତୁ କୁର୍‌ଆନ ଅନୁସାରେ ସତ୍ ଓ ଅସତ୍ କେବଳ ଦୁଇଟି ମାର୍ଗ ଅଛି । ଧର୍ମ ଓ ଅଧର୍ମ ଦୁଇଟି ପଥ ରହିଛି । ମଝିରେ ତୃତୀୟ ପଥ କିଛି ନାହିଁ । ଯଥା–ସତ୍ୟ ପୁଣ୍ୟ ଏବଂ ମିଥ୍ୟା ପାପ । ପରୋପକାର ଧର୍ମ, ପରଅନିଷ୍ଟ ଅଧର୍ମ । କୌଣସି କର୍ମ କେବଳ ଏହି ଦୁଇଟି ଶ୍ରେଣୀଭୁକ୍ତ ହୋଇପାରିବ । ତା' ପାଇଁ ତୃତୀୟ ଶ୍ରେଣୀ କିଛି ନାହିଁ ।

ଯଦି ଧର୍ମର ପରିଭାଷା କେବଳ ଏକ ବିଶ୍ୱାସ ବା ମାନସିକ ପରିକଳ୍ପନା ହୋଇଥାଆନ୍ତା କିମ୍ବା ମନୁଷ୍ୟର ଚରିତ୍ର ବା ଆଚରଣକୁ ଯଦି ଏହା ପ୍ରଭାବିତ କରୁନଥାନ୍ତା, ତେବେ କିଏ କ'ଣ ବିଶ୍ୱାସ କଲା ବା ନକଲା ଈଶ୍ୱରଙ୍କୁ କୌଣସି ଫରକ୍ ପଡ଼ନ୍ତା ନାହିଁ । କିନ୍ତୁ ଧର୍ମ ସହ କର୍ମ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ ଏବଂ ପ୍ରତ୍ୟେକ କର୍ମ କୌଣସି ନା କୌଣସି ବିଶ୍ୱାସ ଦ୍ୱାରା ପରିଚାଳିତ ହୁଏ । ତେଣୁ ପ୍ରତିଟି କର୍ମ ଭଲ ବା ମନ୍ଦଫଳ ଅର୍ଜନ ମଧ୍ୟ କରେ । ଏହା ବ୍ୟତୀତ ଧର୍ମ ଏକ ଜୀବନ-ବ୍ୟବସ୍ଥା ଏବଂ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ମଣିଷକୁ ଧର୍ମନିଷ୍ଠ ଓ ଶୃଙ୍ଖଳିତ କରିବା ଏହାର ଉଦ୍ଦେଶ୍ୟ । ଏହି ବାଟ, ଯାହାକୁ ଧର୍ମ କୁହାଯାଏ, ବସ୍ ବା ଟ୍ରେନ୍ ଚଳାଚଳ କରିବାର କୌଣସି ବାଟ ନୁହେଁ । ଏହା ଜୀବନ ପଥ । ଏଥିରେ ବାଟବଣା ହେଲେ ଲକ୍ଷ୍ୟ ମଧ୍ୟ ବଦଳି ଯିବ । ଉଦାହରଣ ସ୍ୱରୂପ, ଅର୍ଥ ଉପାର୍ଜନର ଅନେକ ବାଟ ରହିଛି । ପରିବାର ପ୍ରତିପୋଷଣ କରିବା ଓ ସୁଖଶାନ୍ତିରେ ରହିବା ଧନ ରୋଜଗାର କରିବାର ଲକ୍ଷ୍ୟ । ଏହି ଲକ୍ଷ୍ୟ ହାସଲ କରିବା ପାଇଁ ଯଦି କେହି ଡକାୟତି ବା ଡ୍ରଗ୍‌ସ ସ୍ମଗଲିଂର ପନ୍ଥା ଗ୍ରହଣ କରେ, ତେବେ ଧନ ଅବଶ୍ୟ ତାକୁ ମିଳିପାରେ । ମାତ୍ର ଏହି ପନ୍ଥାଟି ଏକ ଅସତ୍ ପନ୍ଥା । ଏହା ମନୁଷ୍ୟ ଜୀବନରେ ପ୍ରକୃତ ସୁଖଶାନ୍ତି ପରିବର୍ତ୍ତେ ଅଶାନ୍ତି ଓ

ଅସ୍ଥିରତା ସୃଷ୍ଟି କରିବ । ଏହି ପଥ ତାକୁ ଲକ୍ଷ୍ୟସ୍ଥଳ ପରିବର୍ତ୍ତେ ଜେଲ୍‌ଖାନା ବା ଶ୍ମଶାନରେ ମଧ୍ୟ ପହଞ୍ଚାଇ ଦେଇପାରେ । ଏମିତି ବାଟକୁ କ'ଣ ସଦ୍‌ପଥ ବା ଧର୍ମପଥ କୁହାଯାଇପାରେ ? ଏହା କିପରି ସମ୍ଭବ ଯେ, ନ୍ୟାୟୋଚିତ ମାର୍ଗରେ ଉପାର୍ଜନ ଏବଂ ଅନ୍ୟାୟ ଉପାର୍ଜନ ଉଭୟ ପନ୍ଥା ଠିକ୍ ? ଦୁଇ ଯୁକ୍ତ ଦୁଇ ଚାରି ଏବଂ ଦୁଇ ଯୁକ୍ତ ତିନି ମଧ୍ୟ ଚାରି ? ଯେପରି ପରୀକ୍ଷା ପ୍ରଶ୍ନପତ୍ରରେ ଥିବା ଅନେକ ସମ୍ଭାବ୍ୟ ଉତ୍ତରଗୁଡ଼ିକ ମଧ୍ୟରୁ ଠିକ୍ ଉତ୍ତର କେବଳ ଗୋଟିଏ ଥାଏ, ସେହିପରି ଅନେକ ଜୀବନମାର୍ଗଗୁଡ଼ିକ ମଧ୍ୟରେ ସଦ୍‌ମାର୍ଗ କେବଳ ଗୋଟିଏ ।

ଅବଶ୍ୟ ଦିବ୍ୟଧର୍ମର ଶିକ୍ଷା ବିଭିନ୍ନ ଗ୍ରନ୍ଥ, ମୁନିଋଷି ବା ଧର୍ମପ୍ରବର୍ତ୍ତକଙ୍କ ସୂତ୍ରରୁ ଆସିଛି, କିନ୍ତୁ ସେହି ସନାତନ ମାର୍ଗ ମାତ୍ର ଗୋଟିଏ ହିଁ ରହିଛି । ସୁତରାଂ ମହାମାନ୍ୟ ମୁହମ୍ମଦ କହିଛନ୍ତି :

> "ଦିବ୍ୟବାର୍ତ୍ତାବହମାନଙ୍କର ମାତା ଭିନ୍ନ ଭିନ୍ନ, କିନ୍ତୁ ସେମାନଙ୍କର ଧର୍ମ ଗୋଟିଏ ।"

ସହୀବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ୬୫୨



# ଇସ୍‌ଲାମ କ'ଣ

ଇସ୍‌ଲାମ ୧୪୦୦ ବର୍ଷ ତଳର କୌଣସି ନୂତନ ଧର୍ମ ନୁହେଁ, ବରଂ ଧରାପୃଷ୍ଠର ସର୍ବପୁରାତନ ଜୀବନ-ଶୈଳୀ । 'ଇସ୍‌ଲାମ' ଆରବୀ ଭାଷାରେ ଈଶ୍ୱରଙ୍କ ପ୍ରତି ସମର୍ପଣ ଓ ଆନୁଗତ୍ୟକୁ କୁହାଯାଏ ଏବଂ ମଣିଷର ସ୍ରଷ୍ଟାଙ୍କ ପ୍ରତି ସର୍ବସମର୍ପଣର ଭାବନାକୁ କୁହାଯାଏ । କୌଣସି ବ୍ୟକ୍ତି ବା ସ୍ଥାନର ନାମ ଅନୁସାରେ 'ଇସ୍‌ଲାମ'ର ନାମକରଣ ହୋଇନାହିଁ । ଏହା ସୃଷ୍ଟିର ଏକ ନିର୍ଦ୍ଦିଷ୍ଟ ଗୁଣକୁ ପ୍ରକାଶ କରୁଥିବା ଏକ ଆରବୀ ଶବ୍ଦ । କୁର୍‌ଆନ ଅନୁସାରେ ସୂର୍ଯ୍ୟ, ଚନ୍ଦ୍ର, ଜଳ, ବାୟୁ, ପଶୁପକ୍ଷୀ, ତରୁଲତା—ସମସ୍ତଙ୍କର ଧର୍ମ ଇସ୍‌ଲାମ କାରଣ ସମସ୍ତେ ଈଶ୍ୱରଙ୍କ ପ୍ରତି ସମର୍ପିତ ଓ ତାଙ୍କରି ଆଜ୍ଞାରେ ପରିଚାଳିତ । ଯେଉଁମାନେ ଈଶ୍ୱରଙ୍କୁ ନିଜର ସମସ୍ତ ଇଚ୍ଛା ସମର୍ପିତ କରିଦିଅନ୍ତି, ତାଙ୍କୁ ନିଜର ତ୍ରାଣକର୍ତ୍ତା ମାନି ତାଙ୍କରି ସେବା-ଉପାସନା କରନ୍ତି ଏବଂ ତାଙ୍କ ପ୍ରେରିତ ଧର୍ମଗ୍ରନ୍ଥ ଓ ଧର୍ମଦୂତଙ୍କର ଉପଦେଶ ଅନୁସାରେ ଜୀବନ-ନିର୍ବାହ କରନ୍ତି, ସେମାନଙ୍କୁ ଆରବୀ ଭାଷାରେ 'ମୁସଲିମ୍' କୁହଯାଏ । ଅର୍ଥାତ୍ 'ଈଶ୍ୱରଙ୍କର ଆଜ୍ଞାଧୀନ ସେବକ' । ଯେଉଁମାନେ ନିଜ ନିଜ ସମୟର ଧର୍ମଦୂତଙ୍କ ଦ୍ୱାରା ପ୍ରଚାରିତ ମାର୍ଗ ଗ୍ରହଣ କରିଥିଲେ, ସେମାନେ ଯେକୌଣସି ଦେଶର ବା ଯେକୌଣସି ଯୁଗର ବ୍ୟକ୍ତି ହୁଅନ୍ତୁ, ଈଶ୍ୱରଙ୍କର ଆଜ୍ଞାବହ ଥିଲେ ।

ଇସ୍‌ଲାମ ମାନବଜଗତର ଶାନ୍ତି ଓ ସଫଳତା ପାଇଁ ଈଶ୍ୱରଙ୍କ ଦ୍ୱାରା ନିର୍ଦ୍ଧାରିତ ଜୀବନ ମାର୍ଗ । ଏହି ମାର୍ଗର ଅନୁସରଣ ଦ୍ୱାରା ଧରାପୃଷ୍ଠରେ ଶାନ୍ତି ସ୍ଥାପନ ହୁଏ ଏବଂ ପରଲୋକରେ ସୁଖ ଶାନ୍ତି ପ୍ରାପ୍ତ ହୁଏ ବୋଲି ଇସ୍‌ଲାମର ଅନ୍ୟ ଏକ ଅର୍ଥ 'ଶାନ୍ତି' । ଏହି ଜୀବନ ମାର୍ଗର ଶିକ୍ଷା ଈଶ୍ୱରଙ୍କର ସବୁ ଧର୍ମଗ୍ରନ୍ଥଗୁଡ଼ିକ ଦେଇଛନ୍ତି ଏବଂ ଏହାର ପ୍ରଚାର ତାଙ୍କର ସମସ୍ତ ମାର୍ଗଦର୍ଶକ କରିଛନ୍ତି । ଈଶ୍ୱରଙ୍କ ଦ୍ୱାରା ନିଯୁକ୍ତ ସମସ୍ତ ମହମାନ୍ୟ ମାର୍ଗଦର୍ଶକଙ୍କର ଏକା ଧର୍ମ ଥିଲା । ମହାମାନ୍ୟ ଯୀଶୁ, ମହାମାନ୍ୟ ଦାଉଦ, ମହାମାନ୍ୟ ମୁସା,

ମାହାମାନ୍ୟ ଇବ୍ରାହିମ ଏବଂ ଅନ୍ୟ ସମସ୍ତ ଧର୍ମଦୂତମାନଙ୍କର ଧର୍ମ ଯାହା ଥିଲା, ସେଇ ଧର୍ମ ହିଁ ମହାମାନ୍ୟ ମୁହମ୍ମଦଙ୍କର ଥିଲା । ଏମାନେ ଭିନ୍ନ ଭିନ୍ନ ଧର୍ମର ପ୍ରଚାର କରି ନାହାନ୍ତି । ଯେଉଁମାନେ ଭାବନ୍ତି ଯେ, ବିଭିନ୍ନ ଦିବ୍ୟଗ୍ରନ୍ଥଗୁଡ଼ିକ ବିଭିନ୍ନ ସମ୍ପ୍ରଦାୟର ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ବା ଏଗୁଡ଼ିକ ଭିନ୍ନ ଭିନ୍ନ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ, ସେମାନଙ୍କର ଧାରଣା ଠିକ ନୁହେଁ । ସବୁ ଦିବ୍ୟଗ୍ରନ୍ଥଗୁଡ଼ିକ ଗୋଟିଏ ଉଦ୍ଦେଶ୍ୟରେ ଜଣେ ଈଶ୍ୱରଙ୍କ ଦ୍ୱାରା ପଠାଯାଇଛି ।

ପବିତ୍ର କୁର୍‌ଆନ ସ୍ରଷ୍ଟାଙ୍କର ଅନେକ ପତ୍ରଗୁଡ଼ିକ ମଧ୍ୟରୁ ଅନ୍ୟତମ ଏବଂ ଏହା ପୂର୍ବପ୍ରେରିତ ଦିବ୍ୟଗ୍ରନ୍ଥଗୁଡ଼ିକରେ ଥିବା ସମସ୍ତ ମୌଳିକ ଶିକ୍ଷାଗୁଡ଼ିକୁ ବହନ କରିଛି । କୌଣସି ନୂତନ ଧର୍ମର ସ୍ଥାପନ ନୁହେଁ, ବରଂ ପୁରାତନ ଧର୍ମର ପୁନଃସ୍ଥାପନ ଏହାର ଉଦ୍ଦେଶ୍ୟ । ଏହା ଦିବ୍ୟଧର୍ମରେ ହୋଇଯାଇଥିବା ଅପଭ୍ରଂଶର ସଂସ୍କାର ପାଇଁ ତଥା ଜୀବନ ବ୍ୟବସ୍ଥାକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ପ୍ରକଟିତ ହେଲା । ଏହା ସ୍ରଷ୍ଟାଙ୍କର ଶେଷ ପତ୍ର, ଅନ୍ତିମ ବେଦ ଏବଂ ଅନ୍ତିମ ବାଇବେଲ୍ । ସଂକୀର୍ଣ୍ଣ ମନୋଭାବ ନେଇ ଇସ୍‌ଲାମକୁ ବୁଝିବା ସମ୍ଭବ ନୁହେଁ । ଜାତି, ଧର୍ମ, ଗୋଷ୍ଠୀ, ଭାଷା ଓ ବର୍ଣ୍ଣର ଊର୍ଦ୍ଧ୍ୱକୁ ଉଠି 'ବସୁଧୈବ କୁଟୁମ୍ବକମ୍'ର ମହତ୍ତ୍ୱକୁ ହୃଦୟଙ୍ଗମ କରିପାରିଲେ ଏବଂ 'ମାନବଧର୍ମ'ର ପରିଭାଷାକୁ ବୁଝିପାରିଲେ, ଇସ୍‌ଲାମକୁ ସହଜରେ ବୁଝିହେବ ।





# ଇସ୍‌ଲାମ ମଣିଷର ପ୍ରାକୃତିକ ଧର୍ମ

ଇସ୍‌ଲାମ ମନୁଷ୍ୟ ପ୍ରକୃତିର ସଂପୂର୍ଣ୍ଣ ଅନୁରୂପ । ଏହା ତାର ପ୍ରାକୃତିକ ଧର୍ମ । କୌଣସି କୃତିମତା ଉପରେ ଏହା ଆଧାରିତ ନୁହେଁ କିମ୍ବା କୃତିମତାକୁ ଇସ୍‌ଲାମ ପସନ୍ଦ କରେ ନାହିଁ । ଇସ୍‌ଲାମର ଅନ୍ତିମ ଧର୍ମଦୂତ ମହାମାନ୍ୟ ମହମ୍ମଦ କହିଛନ୍ତି :

''ପ୍ରତ୍ୟେକ ଶିଶୁ ଇସ୍‌ଲାମ+ର ପ୍ରକୃତି ଧାରଣ କରି ଜନ୍ମ ନିଏ ।''

**ସହୀ ବୁଖାରୀ, ୨ୟ ଖଣ୍ଡ, ହଦିସ୍ ୪୪୧**

ଅର୍ଥାତ୍, ମାନବ ଶିଶୁଟି ଯେଉଁ ପ୍ରକୃତି ଧାରଣ କରିଥାଏ, ତାହାହିଁ ଇସ୍‌ଲାମର ସ୍ୱଭାବ ।

ମନୁଷ୍ୟ ଶିଶୁ ରୂପରେ ଧରାପୃଷ୍ଠରେ ଜନ୍ମ ନିଏ । ଯଦିଓ ଶିଶୁମାନେ ବିଭିନ୍ନ ଧର୍ମୀୟ ପରିବେଶରେ ଜନ୍ମଲାଭ କରନ୍ତି, ସେମାନଙ୍କ ପ୍ରକୃତି ଓ ସ୍ୱଭାବ ଏକାପରି ଥାଏ । ମିଥ୍ୟା, ଭଣ୍ଡାମି କିମ୍ବା କପଟ ସେମାନେ ଜାଣିନଥାନ୍ତି । ଛଳନା ସେମାନଙ୍କୁ ଛୁଇଁ ନଥାଏ । ଜନ୍ମ ହେବାମାତ୍ରେ ସେମାନେ ବାପା-ମା'ଙ୍କର ଆଦେଶ ମଧ୍ୟ ପାଳନ କରିନଥାନ୍ତି କିମ୍ବା ତାଙ୍କର ନିର୍ଦ୍ଦେଶ ମାନି ନିଜ ଆଚରଣ ବଦଳାଇ ନଥାନ୍ତି । ସେମାନେ କେବଳ ନିଜର ପ୍ରକୃତ ପ୍ରଭୁଙ୍କର ଆଦେଶ ପାଳନ କରିଥାଆନ୍ତି, ଯାହାଙ୍କ ଆଦେଶ ଜଳ, ସ୍ଥଳ ଓ ଆକାଶ ପାଳନ କରନ୍ତି । ଏହାର ଶିକ୍ଷା ସେମାନଙ୍କୁ ଠିକ୍ ସେହିପରି ଦିଆଯାଇଥାଏ, ଯେପରି ପଶୁ-ପକ୍ଷୀ ବା କୀଟ-ପତଙ୍ଗମାନଙ୍କୁ ଦିଆଯାଇଥାଏ । ଅନ୍ୟ ଶବ୍ଦରେ ଏହାକୁ ଆମେ ସେମାନଙ୍କର ''ପ୍ରାକୃତିକ ସ୍ୱଭାବ'' ବୋଲି କହୁ ।

---

+ 'ଇସ୍‌ଲାମ' ଅର୍ଥ ଈଶ୍ୱରଙ୍କ ପ୍ରତି ସମ୍ପୂର୍ଣ୍ଣ ସମର୍ପଣ ଓ ଆନୁଗତ୍ୟ । ଏହାର ଅନ୍ୟ ଏକ ଅର୍ଥ ହେଉଛି 'ଶାନ୍ତି' ।

ଯଦି କୌଣସି ଶିଶୁକୁ ତା' ପ୍ରବୃତ୍ତି ଅନୁଯାୟୀ ଜୀବନଯାପନ କରିବା ପାଇଁ ଛାଡ଼ି ଦିଆଯାଏ, ତେବେ ସେ ତା'ର ପ୍ରକୃତି-ଦତ୍ତ ପଥ ହିଁ ଅନୁସରଣ କରିବ । ଉଦାହରଣ ସ୍ୱରୂପ, ଜଳ ଉପରେ କୌଣସି ଯନ୍ତ୍ର ଦ୍ୱାରା ବାହ୍ୟ ଚାପ ପ୍ରୟୋଗ କଲେ ସେ ଉର୍ଦ୍ଧ୍ୱମୁଖୀ ହୋଇପାରେ । କିନ୍ତୁ ତାକୁ ଯଦି ସ୍ୱାଭାବିକ ଅବସ୍ଥାରେ ଛାଡ଼ି ଦିଆଯାଏ, ତେବେ ସେ ନିମ୍ନଗାମୀ ହେବ ଯାହା ଜଳର ପ୍ରକୃତ ଧର୍ମ । ସେହିପରି ମାନବ ଶିଶୁଟିକୁ ଯଦି ତା'ର ସ୍ୱାଭାବିକ ଅବସ୍ଥାରେ ବଞ୍ଚିବାକୁ ଦିଆଯାଏ, ତେବେ ସେ କେବଳ ତାଙ୍କୁ ହିଁ ନିଜର ପ୍ରଭୁ ଓ ସ୍ରଷ୍ଟା ବୋଲି ବିଚାର କରିବ, ଯିଏ ବ୍ରହ୍ମାଣ୍ଡର ପ୍ରତ୍ୟେକ ବସ୍ତୁର ସ୍ରଷ୍ଟା ଓ ଅଧିଶ୍ୱର ଅଟନ୍ତି । ସେ ତାଙ୍କୁ ହିଁ ନିଜର ପାଳନକର୍ତ୍ତା ବୋଲି ବିଶ୍ୱାସ କରିବ, ଯିଏ ସୃଷ୍ଟିର ଅନ୍ୟ ପ୍ରାଣୀମାନଙ୍କର ପାଳନକର୍ତ୍ତା । ସେ ବିପଦରେ ତାଙ୍କୁ ହିଁ ସାହାଯ୍ୟ ପାଇଁ ଡାକିବ, ଯାହାକୁ ଅନ୍ୟ ଜୀବଜନ୍ତୁ ଡାକନ୍ତି । ଶୈଶବ ଅବସ୍ଥାରେ ମନୁଷ୍ୟର ପ୍ରାକୃତିକ ଧର୍ମ ଏହାହିଁ ଥିଲା ଯେ, ତା' ଈଶ୍ୱର ବିଭିନ୍ନ ଅଂଶରେ ବିଭାଜିତ ନଥିଲେ, ତାଙ୍କରି ଆଜ୍ଞା ସେ ମାନୁଥିଲା, ଯାହା ଆଜ୍ଞା ସୂର୍ଯ୍ୟ ଚନ୍ଦ୍ର ମାନନ୍ତି ।

ତା' ହସରେ ଛଳନା ନଥିଲା
ତା' ଲୁହରେ ପ୍ରତାରଣା ନ ଥିଲା
ତା' ମନରେ ନ ଥିଲା ଅହଂକାର
ତା' ଆଖିରେ ଘୃଣା ନ ଥିଲା
ତା' ହୃଦୟରେ କପଟ ବା ତା' ପ୍ରେମରେ ସ୍ୱାର୍ଥ ନ ଥିଲା
ତା' ବ୍ୟବହାର ନ ଥିଲା କଷ୍ଟଦାୟକ
କାହା ଅଧିକାର ସେ କ୍ଷୁର୍ଣ୍ଣ କରୁନଥିଲା
କିମ୍ବା କାହାପ୍ରତି ଅତ୍ୟାଚାର କରୁନଥିଲା
ନିଜ ଅଜାଣତରେ ସରଳ ନିଷ୍ପାପ ଶିଶୁଟି ପ୍ରକୃତ 'ମାନବଧର୍ମ' ଧାରଣ କରିଥିଲା ।

ମାନବଧର୍ମର ଏହାହିଁ ପ୍ରକୃତି, ଯାହାକୁ ଧାରଣ କରି ପ୍ରତି ଶିଶୁ ଜନ୍ମ ନିଏ । କିନ୍ତୁ ଧୀରେ ଧୀରେ ଶିଶୁଟି ବାପା ମାଆ ଏବଂ ପରିବେଶକୁ ଚିହ୍ନିବା ଆରମ୍ଭ କରେ ଏବଂ ସେମାନଙ୍କ ଦ୍ୱାରା ପ୍ରଭାବିତ ହୁଏ । ତା' ସ୍ୱଭାବରେ ପରିବର୍ତ୍ତନ ହୁଏ ଏବଂ ତା'ର ଜନ୍ମଗତ ଧର୍ମ ଧୀରେ ଧୀରେ ବଦଳିବାକୁ ଆରମ୍ଭ

କରେ । ସେ ନିଜ ଜ୍ଞାତି-ପରିଜନଙ୍କ ଧର୍ମ ଅନୁସରଣ କରେ । ତା' ଈଶ୍ୱରଙ୍କ ସଂଖ୍ୟା ଠିକ୍ ସେତିକି ହୋଇଯାଏ, ଯେତିକି ତା' ପ୍ରିୟଜନଙ୍କର ଥାଏ ଅଥଚ ତା'ର ପ୍ରକୃତ ତ୍ରାଣକର୍ତ୍ତା ସେ ପର୍ଯ୍ୟନ୍ତ ସେଇ ଜଣେ ହିଁ ଥାଆନ୍ତି, ଯିଏ ମା' ଗର୍ଭରେ ଏବଂ ମା' କୋଳରେ ତା' ପ୍ରତି ଯତ୍ନବାନ୍ ଥିଲେ । ମିଥ୍ୟା, କପଟ, ଅନ୍ୟାୟ, ଅତ୍ୟାଚାର ଆଦି ଅପ୍ରାକୃତିକ ଆଚରଣଗୁଡ଼ିକ ମଧ୍ୟ ସେ ବାହାରୁ ଶିଖିଥାଏ । ଅବଶ୍ୟ କୃତ୍ରିମତାକୁ ତା' ସରଳ ହୃଦୟ ସହଜରେ ଗ୍ରହଣ କରିପାରେ ନାହିଁ । ପ୍ରକୃତି-ବିରୋଧୀ ଯେକୌଣସି ଆଚରଣ ସେ ଅତି କଷ୍ଟରେ ଶିଖେ । ଏଇଥିପାଇଁ ବାପା ଯଦି ତାକୁ ମିଛ କହିବା ପାଇଁ କହନ୍ତି, ତା' ସରଳ ମୁହଁରୁ ବାହାରିପଡ଼େ—"ବାପା କହିଲେ ବାପା ଘରେ ନାହାନ୍ତି ।" କିନ୍ତୁ ବାଧ୍ୟ ହୋଇ ସେ ପିତା ମାତାଙ୍କ ରୀତି ଓ ପରମ୍ପରାକୁ ଅନୁକରଣ କରିଚାଲେ ।

ଏହି କାରଣରୁ ଈଶ୍ୱର ତାଙ୍କୁ ପ୍ରାପ୍ତ ବୟସ୍କ ନ ହେବା ପର୍ଯ୍ୟନ୍ତ ଏହି ଧର୍ମ ମାର୍ଗ ପାଇଁ ଉତ୍ତରଦାୟୀ କରନ୍ତି ନାହିଁ କିମ୍ବା ଦଣ୍ଡ ମଧ୍ୟ ଦିଅନ୍ତି ନାହିଁ । ପ୍ରାପ୍ତବୟସ୍କ ହୋଇଗଲେ ସେ ତା'ର ପସନ୍ଦ ପାଇଁ ଉତ୍ତରଦାୟୀ ରହେ ଏବଂ ସତ୍‌ପଥର ସନ୍ଧାନ ତାର ବ୍ୟକ୍ତିଗତ ଦାୟିତ୍ୱ ହୋଇପଡ଼େ । ତା'ର ଅନ୍ତରାତ୍ମା ତାକୁ ସଚେତନ କରିବା ଆରମ୍ଭ କରିଦିଏ ଯେ, ଈଶ୍ୱର ଏକ ଏବଂ ସୃଷ୍ଟିରେ କେହି ତାଙ୍କର ସମତୁଲ୍ୟ ନୁହଁ, ସତ୍ୟ, ନ୍ୟାୟ, ପ୍ରେମ ଓ ପରୋପକାର ଆଦି ପୁଣ୍ୟ କାର୍ଯ୍ୟ ଏବଂ ମିଥ୍ୟା, ଭଣ୍ଡାମି, ଅନ୍ୟାୟ ଓ ଅତ୍ୟାଚାର ଆଦି ପାପ କାର୍ଯ୍ୟ । ଅନ୍ତରାତ୍ମାର ଏହି ନୀରବ ବାର୍ତ୍ତା ପ୍ରତ୍ୟେକ ମନୁଷ୍ୟ ଶୁଣିପାରେ । ସେ ପଛେ ପାଠଶାଠ ପଢ଼ି ନଥାଉ କିମ୍ବା ଅକ୍ଷର ମଧ୍ୟ ଶିଖି ନଥାଉ, ତା' ବିବେକ ସତ୍-ଅସତ୍ ମଧ୍ୟରେ ଥିବା ପାର୍ଥକ୍ୟକୁ ଚିହ୍ନିପାରେ ।

ସାଧାରଣତଃ ଆମେ ନିଜ ଜ୍ଞାତି ପରିଜନଙ୍କ ଧର୍ମକୁ ନିଜ ଧର୍ମ ରୂପେ ଗ୍ରହଣ କରିଥାଉ । ସେମାନେ ହିନ୍ଦୁ ଥିଲେ ଆମେ ହିନ୍ଦୁ, ସେମାନେ ମୁସଲମାନ ଥିଲେ ଆମେ ମୁସଲମାନ କିମ୍ବା ସେମାନେ ଖ୍ରୀଷ୍ଟିୟାନ୍ ଥିଲେ ଆମେ ମଧ୍ୟ ନିଜକୁ ଖ୍ରୀଷ୍ଟିୟାନ୍ ବୋଲି ପରିଚୟ ଦେଉ । ସତରେ କ'ଣ ଆମେ ବୁଝି ବିଚାରି ବା ଯୁକ୍ତିଯୁକ୍ତ ପ୍ରମାଣକୁ ଆଧାର କରି ଏହା କରିଥାଉ ? ବରଂ ଆମେ ଏଇୟା ଭାବି କରିଥାଉ ଯେ, ଆମ ପିତୃ ପିତାମହ ଯେଉଁ ରୀତି-ନୀତି ମାନି ଚଳି ଆସୁଛନ୍ତି ଏବଂ ଯେଉଁ ପରମ୍ପରା ସମାଜର ମାନ୍ୟଗଣ୍ୟ ତଥା ଶିକ୍ଷିତ ବର୍ଗରେ ମାନ୍ୟତା ଲାଭ କରିଛି, ତାହା ନିଶ୍ଚୟ ଠିକ ଥିବ । ଏମାନେ ସମସ୍ତେ କ'ଣ ଭୁଲ୍

କରୁଛନ୍ତି ? ପ୍ରକୃତରେ ଏହା ଆମର ଏକ ଧାରଣା ମାତ୍ର । ଯେଉଁ ପରିବାରରେ ଆମେ ଜନ୍ମ ନେଇଛୁ ତା'ର ପଦ୍ଧତି ଠିକ ଥିବାର ଯେତିକି ସମ୍ଭାବନା ଥାଏ, ଭୁଲ ଥିବାର ମଧ୍ୟ ସେତିକି ସମ୍ଭାବନା ଥାଏ । କିନ୍ତୁ ପିତୃପିତାମହଙ୍କ ପରମ୍ପରା ପ୍ରତି ସ୍ୱଭାବଗତ ପ୍ରେମ ଓ ଅନୁରକ୍ତି ଯୋଗୁଁ ମନୁଷ୍ୟ ତାକୁ ଠିକ୍ ଭାବେ । ତେଣୁ ସତ୍ୟାସତ୍ୟର ଅନୁସନ୍ଧାନ କରିବା ବାଞ୍ଛନୀୟ । ବେଦ ମଧ୍ୟ ଏହି ଉପଦେଶ ଦିଏ । ଋଗ୍‌ବେଦ କହେ :

> "ଯେଉଁ ମନୁଷ୍ୟ ସତ୍ୟାସତ୍ୟର ନିର୍ଣ୍ଣୟ ନିମନ୍ତେ ସମସ୍ତ ଶୁଭ ଗୁଣ, କର୍ମ, ସ୍ୱଭାବଯୁକ୍ତ ବିଦ୍ୟା, ସୁଶିକ୍ଷାଯୁକ୍ତ ଶାସ୍ତ୍ରଜ୍ଞ, ଧର୍ମାତ୍ମା ବିଦ୍ୱାନ୍‌ଙ୍କ ବାଣୀକୁ ପ୍ରାପ୍ତ ହୁଅନ୍ତି, ସେ ବହୁତ ଐଶ୍ୱର୍ଯ୍ୟବାନ୍ ହୋଇ ଦିଗନ୍ତବ୍ୟାପୀ ସୁନ୍ଦର କୀର୍ତ୍ତି ବିସ୍ତାର କରନ୍ତି ।"
>
> ଋଗ୍‌ବେଦ, ପ୍ରଥମ ମଣ୍ଡଳ, ସୂକ୍ତ-୧୬୭, ମନ୍ତ୍ର-୩

ମନୁଷ୍ୟଙ୍କୁ 'ସ୍ୱଧର୍ମ'କୁ ଫେରାଇ ଆଣିବା ପାଇଁ ଏବଂ ତାକୁ ପ୍ରକୃତ ମାନବ ଧର୍ମରେ ପରିଚାଳିତ କରିବା ପାଇଁ ଈଶ୍ୱର ମାର୍ଗଦର୍ଶନ କରନ୍ତି ।

## ♦ ମାର୍ଗଦର୍ଶନ ପଦ୍ଧତି

ଆମେ ଜାଣୁ ଯେ, ବୃକ୍ଷଲତା ଗତିଶୀଳ ନୁହନ୍ତି, ତେଣୁ ସେମାନଙ୍କର ଆହାର ପାଦ ତଳେ ମିଳିଯାଏ । ପଶୁପକ୍ଷୀ ଚାଲବୁଲ କରିପାରନ୍ତି, ତେଣୁ ସେମାନଙ୍କ ଆହାର ଧରାପୃଷ୍ଠରେ ବିକ୍ଷିପ୍ତ ଭାବରେ ଥାଏ ଯାହାକୁ ସେମାନେ ସଂଗ୍ରହ କରନ୍ତି । ନିଜର ଯତ୍ନ ଓ ସୁରକ୍ଷା ବିଷୟରେ ମଧ୍ୟ ସେମାନଙ୍କୁ ଶିକ୍ଷା ଦିଆଯାଇଥାଏ ।

ମାନବଶିଶୁଟି ଜନ୍ମପରେ ନିଜ ଖାଦ୍ୟପେୟ ବା ଭଲମନ୍ଦ ବିଷୟରେ ପଶୁପକ୍ଷୀଙ୍କ ପିଲାଙ୍କଠାରୁ ମଧ୍ୟ ଆହୁରି ଅଧିକ ଅସହାୟ ଅବସ୍ଥାରେ ଥାଏ । ତେଣୁ ତା' ଲାଳନ ପାଳନ ବାପା-ମାଆଙ୍କ ଦ୍ୱାରା କରାଯାଏ । ମା' ମନରେ ମମତା ଭରିଦିଆଯାଏ । ସେ ନିଜେ ନ ଖାଇ ପିଲାକୁ ଖୁଆଏ । ନିଜେ ନ ପିନ୍ଧି ପିଲାକୁ ପିନ୍ଧାଏ । ରାତି ଉଜାଗର ରହି ତା' ସେବା କରିଥାଏ । ପିଲା ଖଟରୁ ଖସି ପଡୁଥିଲେ ମା' ତାକୁ ଖସିବାକୁ ଦିଏ ନାହିଁ କିମ୍ବା ସେ ନିଆଁକୁ ଧରିବାକୁ ଯାଉଥିଲେ ମା' ତା' ହାତ ଧରି ପକାଏ । ସଦାବେଳେ ସେ ତା' ଯତ୍ନ ନେଉଥାଏ ।

ଧିରେ ଧିରେ ଯେତେବେଳେ ଶିଶୁଟି ବଡ଼ ହୋଇ ନିଜ ଭଲ ମନ୍ଦ ବୁଝିପାରେ, ତା' ଯତ୍ନର ବ୍ୟବସ୍ଥା ବଦଳିଯାଏ । ଆପଣ ଲକ୍ଷ କରିବେ, ଯେଉଁ ମା' ନିଜ ହାତରେ ପିଲାର ସେବାଯତ୍ନ କରୁଥିଲା, ସେ ତାହା କରିବା ଛାଡ଼ି ଦିଏ । ନିଜ ହାତରେ ଖୁଆଇ ଦେବା, ଗାଧୋଇଦେବା ବା ପିଠି ଥାପୁଡ଼େଇ ଶୁଆଇ ଦେବା ଛାଡ଼ି ଦିଏ । ଏବେ ସେ ତାକୁ କେବଳ ମୌଖିକ ଉପଦେଶ ଦିଏ ।

ପିଲାଟି ଯେତେବେଳେ ପ୍ରାପ୍ତ ବୟସ୍କ ହୋଇଯାଏ, ପୁଣି ଏହି ଐଶ୍ୱରୀୟ ବ୍ୟବସ୍ଥାରେ ପରିବର୍ତ୍ତନ ହୁଏ । ପ୍ରତିପୋଷଣର ଦାୟିତ୍ୱ ବଦଳେ । ନିଜ ଆହାର ସେ ନିଜେ ସଂଗ୍ରହ କରେ । ନିଜ ସୁରକ୍ଷା ଦାୟିତ୍ୱ ନିଜେ ବହନ କରେ ଏବଂ ନିଜ ଭଲମନ୍ଦ ବିଷୟରେ ନିଜେ ନିଷ୍ପତ୍ତି ନେଇଥାଏ । ଏହିଠାରେ ମନୁଷ୍ୟଙ୍କୁ ଜୀବନଯାପନ କରିବାପାଇଁ ବିକ୍ଷିପ୍ତ ଭାବରେ ପଡ଼ିଥିବା ଅନେକ ଚଲାପଥର ସମ୍ମୁଖୀନ ହେବାକୁ ପଡ଼େ, ଆଉ ବାଟବଣା ହେବାର ସମ୍ଭାବନା ଥାଏ । ନିଜର ଶ୍ରେଷ୍ଠତମ ସୃଷ୍ଟିର ଦିଗଦର୍ଶନ ପାଇଁ ପରମେଶ୍ୱର ଏ ସ୍ଥାନରେ ଅନ୍ୟ ବ୍ୟବସ୍ଥା କରନ୍ତି । ବର୍ତ୍ତମାନ ଇଶ୍ୱରଙ୍କ 'ଧର୍ମଦୂତ' ଏବଂ 'ଧର୍ମଗ୍ରନ୍ଥ' ପିତାମାତାଙ୍କର ଭୂମିକା ଗ୍ରହଣ କରିନ୍ତି । ଲିଖିତ ଓ ମୌଖିକ, ଉଭୟ ଉପାୟରେ ମନୁଷ୍ୟର ମାର୍ଗ-ଦର୍ଶନ କରାଯାଇଥାଏ । ଏହା ପ୍ରାୟ ସେହିପରି, ଯେପରି ବରିଷ୍ଠ ଅଧିକାରୀଙ୍କ ଦ୍ୱାରା ସରକାରୀ ନିର୍ଦ୍ଦେଶ ଦିଆଯାଇଥାଏ କିମ୍ବା ରାଜଦୂତମାନଙ୍କ ଦ୍ୱାରା ପ୍ରଜାମାନଙ୍କୁ ରାଜାଙ୍କ ଆଦେଶ ପ୍ରଦାନ କରାଯାଇଥାଏ । ଏହି ଅବସ୍ଥାରେ ମନୁଷ୍ୟ ତା'ର ମନୋନିତ ମାର୍ଗ ପାଇଁ ଇଶ୍ୱରଙ୍କ ନିକଟରେ ଉତ୍ତରଦାୟୀ ରହେ । ଇଶ୍ୱରଙ୍କର ଆଦେଶ ବହନ କରିଥିବା ଦିବ୍ୟଗ୍ରନ୍ଥକୁ 'ଧର୍ମଗ୍ରନ୍ଥ' ଓ ତାଙ୍କ ଦ୍ୱାରା ନିଯୁକ୍ତ ପୁରୁଷୋତ୍ତମଙ୍କୁ 'ଧର୍ମ ପ୍ରବର୍ତ୍ତକ' ବା ଧର୍ମଦୂତ କୁହାଯାଏ । ଇଂରାଜୀରେ ତାଙ୍କୁ Prophet ବା Messenger ଏବଂ ଆରବୀରେ ନବୀ ଏବଂ ରସୁଲ କୁହାଯାଏ । ଅକ୍ସଫୋର୍ଡ଼ ଡ଼ିକ୍ସନାରୀରେ ଲେଖାଯାଇଛି ଯେ, Prophetର ଅର୍ଥ "Person considered as an interpreter of divine will".



# ଇସ୍‌ଲାମର ଜୀବନଶୈଳୀ

ଜୀବନଶୈଳୀ ଅର୍ଥ କେବଳ ପୂଜା-ଉପାସନାର ଶୈଳୀ ନୁହେଁ ବରଂ ଜୀବନର ସମସ୍ତ କ୍ଷେତ୍ରଗୁଡ଼ିକ ପାଇଁ ଏକ ଜୀବନ ପ୍ରଣାଳୀ । ମନୁଷ୍ୟର ଆଧ୍ୟାତ୍ମିକ, ପାରିବାରିକ, ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ତଥା ଅନ୍ୟ ସମସ୍ତ କର୍ମକ୍ଷେତ୍ର ଏହାର ଅନ୍ତର୍ଭୁକ୍ତ । ଏକ ଆଦର୍ଶ ମାନବ ସମାଜ ପାଇଁ ଯେଉଁ ନୀତି-ନିୟମଗୁଡ଼ିକ ସର୍ବୋତ୍କୃଷ୍ଟ ହୋଇପାରେ, ସେହିଗୁଡ଼ିକୁ ଈଶ୍ୱର ମାନବଜାତି ପାଇଁ ନିର୍ଦ୍ଧାରଣ କରିଛନ୍ତି । ଏହି ଜୀବନଶୈଳୀକୁ ସ୍ୱୀକାର କଲେ ଈଶ୍ୱର ପ୍ରସନ୍ନ ହୁଅନ୍ତି, ତାଙ୍କୁ ତାଙ୍କର ଅଧିକାର ପ୍ରାପ୍ତ ହୁଏ, ମନୁଷ୍ୟମାନଙ୍କୁ ତାଙ୍କର ଅଧିକାର ମିଳେ, ପିତା-ମାତା ଓ ସମ୍ପର୍କୀୟମାନେ ତାଙ୍କର ନ୍ୟାର୍ଯ୍ୟ ଅଧିକାର ପାଆନ୍ତି, ପଡ଼ୋଶୀଙ୍କୁ, ସାହି-ବସ୍ତିର ଦୀନ-ଦୁଃଖୀ ଏବଂ ଅନାଥ ଓ ଅସହାୟଙ୍କୁ ସେମାନଙ୍କର ଅଧିକାର ମିଳେ । ଏହି ଜୀବନମାର୍ଗର ଅନୁସରଣ ଫଳରେ ସମାଜ ଓ ଦେଶରେ ସୁଖଶାନ୍ତି ପ୍ରତିଷ୍ଠା ହୁଏ ଏବଂ ଏହାରି ଅନୁସରଣର ପ୍ରତିଦାନରେ ମନୁଷ୍ୟକୁ ପରଲୋକରେ ସ୍ୱର୍ଗ ପ୍ରାପ୍ତି ହୁଏ । ବ୍ୟକ୍ତିଗତ ରୂପେ କିଛି ଶାନ୍ତି ମନୁଷ୍ୟକୁ ଈଶ୍ୱରଙ୍କ ସ୍ମରଣ ଚିନ୍ତନ ବା ନାମଜପ ଦ୍ୱାରା ଅବଶ୍ୟ ମିଳିଯାଏ, କିନ୍ତୁ ସମାଜର ସାମୂହିକ ଶାନ୍ତି ଓ ସଫଳତା ତାଙ୍କ ଆଜ୍ଞା ପାଳନ ବ୍ୟତୀତ ଅନ୍ୟ କୌଣସି ଉପାୟରେ କଦାପି ସମ୍ଭବ ନୁହେଁ ।

ଏଥର ଆସନ୍ତୁ ଧର୍ମର ମୌଳିକ ଜୀବନଶୈଳୀ ଉପରେ ଆଲୋଚନା କରିବା । ଧର୍ମଶୈଳୀଟି ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ । ଏହାର ପ୍ରଥମ ଭାଗଟି ସ୍ରଷ୍ଟା ବା ଈଶ୍ୱରଙ୍କର ଅଧିକାର ସମ୍ପର୍କରେ ଏବଂ ଦ୍ୱିତୀୟ ଭାଗଟି ପ୍ରଣୀମାନଙ୍କର, ବିଶେଷତଃ ମାନବ ଅଧିକାର ଓ ସେଗୁଡ଼ିକର ସୁରକ୍ଷା ସମ୍ବନ୍ଧରେ ନୀତି-ନିୟମ ପ୍ରଦାନ କରେ ।



# ଈଶ୍ୱରଙ୍କର ଅଧିକାର

ଈଶ୍ୱରଙ୍କର ମନୁଷ୍ୟ ଉପରେ ଅଶେଷ କୃପା ରହିଛି । ତାଙ୍କରି ଦୟାରୁ ସେ ବଞ୍ଚିରହେ ଏବଂ ତାଙ୍କରି କୃପାରୁ ହିଁ ଜୀବନର ସୁଖ ଭୋଗ କରେ । ସ୍ରଷ୍ଟା ଓ ପ୍ରତିପାଳକ ହିସାବରେ ମନୁଷ୍ୟ ଉପରେ ତାଙ୍କର ଯେଉଁ ଅଧିକାର ରହିଛି, ତାହା ହେଉଛି 'ଉପାସନା' ।

♦ ଉପାସନା କ'ଣ ?

କାହାରିକୁ ପ୍ରଭୁ ବା କର୍ତ୍ତାଧର୍ତ୍ତା ରୂପେ ଗ୍ରହଣ କରି ତା' ନିକଟରେ ନିଜକୁ ସମର୍ପିତ କରିଦେବା ଏବଂ ତା' ପ୍ରସନ୍ନତା ପାଇଁ ପୂଜା-ଅର୍ଚ୍ଚନା ବା ସେବା ଆରାଧନା କରିବାକୁ 'ଉପାସନା' କୁହାଯାଏ । ମନର ଶାନ୍ତି, ଜୀବନର ସୁଖ ଓ ସଫଳତା, ବିପଦରେ ଐଶ୍ୱରୀୟ ସହାୟତା ତଥା ପରଲୋକରେ ମୋକ୍ଷପ୍ରାପ୍ତିର କାମନା ହିଁ ମନୁଷ୍ୟକୁ ପୂଜା-ଅର୍ଚ୍ଚନା ପାଇଁ ପ୍ରବର୍ତ୍ତାଇ ଥାଏ । ତା'ର ଏହି କାର୍ଯ୍ୟସିଦ୍ଧିର ଆବଶ୍ୟକତାରୁ ଉପାସନାର ସୃଷ୍ଟି ।

ମନୁଷ୍ୟ ସଂସାରରେ ନିଜକୁ ଅତ୍ୟନ୍ତ ଦୁର୍ବଳ ଏବଂ ଅସହାୟ ମନେକରେ । ସେ ଅନୁଭବ କରେ ଯେ, ଜୀବନର ଏକ ବିଶାଳ ପରିସର ତା' ଆୟତ୍ତରେ ନାହିଁ । ସଫଳତା ପାଇଁ କଠୋର ପରିଶ୍ରମ କରି ମଧ୍ୟ ସେ ବିଫଳ ହୋଇଥାଏ । ଲାଭବାନ୍ ହେବା ଆଶାରେ କରିଥିବା ବ୍ୟବସାୟଟି ତାକୁ କ୍ଷତିଗ୍ରସ୍ତ ମଧ୍ୟ କରାଇଥାଏ । ରୋଗ-ବ୍ୟାଧି ଓ ଦୁର୍ଘଟଣାରୁ ତାକୁ ମୁକ୍ତି ମିଳେନାହିଁ । ଶାନ୍ତିର କାମନା ତା'ର ପୂର୍ଣ୍ଣ ହୁଏନାହିଁ । ସେ ମୃତ୍ୟୁ ଚାହେଁନାହିଁ, ଅଥଚ ମୃତ୍ୟୁ ତାକୁ ଛାଡ଼େନାହିଁ । ଅସୁମାରୀ ଅଭିଳାଷ ତା'ର ଅପୂର୍ଣ୍ଣ ରହିଯାଏ ।

କେବଳ ଏତିକି ନୁହେଁ, ଆହୁରି ଅନେକ ବିପଦର ତାକୁ ସମ୍ମୁଖୀନ ହେବାକୁ ପଡ଼େ । ବାତ୍ୟାର ତାଣ୍ଡବ ଦେଖି ତା' ହୃଦୟ ଥରିଉଠେ । ବନ୍ୟାର ବିଭୀଷିକା ତାକୁ ଆତଙ୍କିତ କରେ । ଭୂମିକମ୍ପର ଧ୍ୱଂସଲୀଳା ତାକୁ ଭୟଭୀତ କରେ । ସମୁଦ୍ର

ବକ୍ଷରେ ତା' ନୌକା ଟଳମଳ ହୁଏ । ଘଡ଼ଘଡ଼ି ଗର୍ଜ୍ଜନରେ ତା' ଛାତି ଦୋହଲି ଉଠେ । ରୋଗ ବ୍ୟାଧି ତାକୁ ବ୍ୟତିବ୍ୟସ୍ତ କରେ । ଦୁର୍ଘଟଣାରୁ ମଧ୍ୟ ସେ ସୁରକ୍ଷା ଚାହେଁ । ସମୁଦ୍ର ବକ୍ଷରେ ହେଉ କିମ୍ବା ମହାକାଶରେ, କୁଟୀରରେ ହେଉ ବା ପ୍ରାସାଦରେ, ପ୍ରକୃତିର ଅସୁମାରୀ ବିପଦ ପ୍ରତି ମୁହୂର୍ତ୍ତରେ ଡେମୋକ୍ଲିସ୍‌ଙ୍କ ଖଡ୍‌ଗ ଭଳି ତା' ଉପରେ ଝୁଲୁଥାଏ ।

ଏପରି ଅବସ୍ଥାରେ ବିଚରା ଅସହାୟ ମଣିଷଟି ଏକ ଅଦୃଶ୍ୟ ଶକ୍ତିର ସହାୟତା ଖୋଜେ, ଯିଏ ତାକୁ ଆଶ୍ରୟ ଦିଅନ୍ତା, ବିପଦରୁ ଉଦ୍ଧାର କରନ୍ତା ଏବଂ ଇହଲୋକରେ ଶାନ୍ତି ଓ ପରଲୋକରେ ମୁକ୍ତି ପ୍ରଦାନ କରନ୍ତା ।

ଯଦି ମନୁଷ୍ୟ ଚାହିଁବାମାତ୍ରେ ତା'ର ସବୁ ଇଚ୍ଛା ପୂରଣ ହୋଇପାରନ୍ତା ବା ସବୁ ବିପଦ ଆପଦ ଟଳିଯାଆନ୍ତା, ତେବେ ବୋଧହୁଏ ଏହି ପ୍ରାଣୀଟି କେବେହେଲେ କାହା ଆଗରେ ମଥା ନତ କରନ୍ତା ନାହିଁ କିମ୍ବା ତା' ପାଇଁ କୌଣସି କର୍ମକାଣ୍ଡ କରିବାର କଷ୍ଟ କରନ୍ତା ନାହିଁ । ତେଣୁ ଉପାସନା ମଣିଷର ଏକ ପ୍ରାକୃତିକ ଆବଶ୍ୟକତା ।

ଏହି କାର୍ଯ୍ୟସିଦ୍ଧିର ଆବଶ୍ୟକତା ଯୋଗୁଁ ମଣିଷ ଉପାସନା କରେ ଏବଂ ନିଜ ଆରାଧ୍ୟର କୃପାଲାଭ ଆଶାରେ ବିଭିନ୍ନ କର୍ମକାଣ୍ଡ କରେ, ଯଥା—ସ୍ତୁତି ଓ ବନ୍ଦନା, ଜପ ଓ ପ୍ରାର୍ଥନା, ଯୋଗ-ଉପାସନା, ବ୍ରତ-ଉପବାସ, ଦାନ-ପୁଣ୍ୟ, ବଳି ଓ ନୈବେଦ୍ୟ, ଭକ୍ତି-ପ୍ରଣିପାତ ଇତ୍ୟାଦି । ନିଜ ଆରାଧ୍ୟ ପାଇଁ ଗଭୀର ସମର୍ପଣ ଓ ପ୍ରଗାଢ଼ ଭକ୍ତିଭାବ ଯୋଗୁଁ ପ୍ରାୟତଃ ତା' ମୁହଁରୁ ଉପାସ୍ୟର ନାମ ବାହାରିପଡ଼େ ବିଶେଷତଃ ଦୁଃଖ ବିପତ୍ତି ସମୟରେ । କୌଣସି ରାଣ-ନିୟମ କଲାବେଳେ ମଧ୍ୟ ସେ ନିଜ ଉପାସ୍ୟର ନାମ ବ୍ୟବହାର କରେ । ମନସ୍କାମନା ପୂରଣ ପାଇଁ ତା' ନିକଟରେ ମାନସିକ ମଧ୍ୟ କରେ ଏବଂ ବିପଦ ଆପଦ ବେଳେ ଆକୁଳ ହୋଇ ତାକୁ ଡାକିଥାଏ । ଏ ସମସ୍ତ କର୍ମଗୁଡ଼ିକ ଉପାସନା । ଉପାସ୍ୟର ପ୍ରସନ୍ନତା ପାଇଁ ଉପାସକ ଦ୍ୱାରା କରାଯାଉଥିବା ପ୍ରତ୍ୟେକ କର୍ମ ଉପାସନା । ଆରବୀ ଭାଷାରେ ଏହାକୁ 'ଇବାଦତ୍' କୁହାଯାଏ । ଏଗୁଡ଼ିକ କେବଳ ସ୍ରଷ୍ଟାଙ୍କର ଅଧିକାର ।

ଦିବ୍ୟଶିକ୍ଷାରେ ଅପଭ୍ରଂଶ ଓ ବଂଶ ପରମ୍ପରାର ପ୍ରଭାବ ଯୋଗୁଁ ବିଭିନ୍ନ ଯୁଗରେ ମନୁଷ୍ୟ ନିଜ ପ୍ରକୃତ ପ୍ରଭୁଙ୍କ ଭିନ୍ନ ଅନ୍ୟର ଉପାସନା କରିଆସିଛି କିମ୍ବା

ପରମେଶ୍ୱରଙ୍କ ପାଇଁ କରୁଥିବା ଉପରୋକ୍ତ କର୍ମଗୁଡ଼ିକୁ ସମାନ ଭାବରେ ଅନ୍ୟ ପାଇଁ ମଧ୍ୟ କରି ତାକୁ ଈଶ୍ୱରଙ୍କର ଆସନ ପ୍ରଦାନ କରିଛି । ତେଣୁ ପରମେଶ୍ୱର ନିଜ ପ୍ରିୟ ମାନବସମାଜକୁ ପ୍ରତ୍ୟେକ ଯୁଗରେ ନିଜ ଧର୍ମଦୂତ ଓ ଧର୍ମଗ୍ରନ୍ଥ ମାଧ୍ୟମରେ ସତର୍କ କରିଛନ୍ତି ଯେ, ସେମାନଙ୍କର ପ୍ରଭୁ ଏକ ଏବଂ ଅଦ୍ୱିତୀୟ । ସେ ଅଜନ୍ମା, ଅନନ୍ତ ଓ ଅବିନାଶୀ । ଗୁଣ ଓ କର୍ମରେ ସୃଷ୍ଟିର କେହି ତାଙ୍କର ସମତୁଲ୍ୟ ନୁହେଁ । ସୃଷ୍ଟିର ସେ ଅଂଶବିଶେଷ ନୁହଁନ୍ତି କିମ୍ୱା ସୃଷ୍ଟି ତାଙ୍କର ଅଂଶବିଶେଷ ନୁହଁ । ସେଇ ହିଁ ସେମାନଙ୍କର ସ୍ରଷ୍ଟା ଓ ପ୍ରତିପାଳକ, ବ୍ରହ୍ମାଣ୍ଡର ଅଦ୍ୱିତୀୟ ଅଧିପତି । କେବଳ କୃପାଭିକ୍ଷା ଛଡ଼ା ଅନ୍ୟ କୌଣସି ଉପାୟରେ ତାଙ୍କୁ ପ୍ରଭାବିତ କରି ତାଙ୍କଠାରୁ କୌଣସି କାର୍ଯ୍ୟସିଦ୍ଧି କରାଇନେବାର ଶକ୍ତି ଓ ସାମର୍ଥ୍ୟ ବ୍ରହ୍ମାଣ୍ଡରେ କାହାରି ନାହିଁ—ସେ କୌଣସି ମହାମାନ୍ୟ ଧର୍ମପ୍ରବର୍ତ୍ତକ ହୁଅନ୍ତୁ, ପୁରୁଷୋତ୍ତମ ହୁଅନ୍ତୁ, ଦେବଦୂତ ବା ସ୍ୱର୍ଗଦୂତ ହୁଅନ୍ତୁ । ଆକାଶରୁ ପାତାଳ ପର୍ଯ୍ୟନ୍ତ ବ୍ରହ୍ମାଣ୍ଡର ସମସ୍ତ ଜୀବ-ଜଡ଼ ଅସହାୟ । ପରମେଶ୍ୱର ସୃଷ୍ଟି କଲେ ହିଁ ସମସ୍ତେ ସୃଷ୍ଟି ହୁଅନ୍ତି, ସେ ଜୀବିତ ରଖିଲେ ହିଁ ସମସ୍ତେ ବଞ୍ଚି ରହନ୍ତି ଏବଂ ବିନାଶ କଲେ ତତ୍‌କ୍ଷଣାତ୍ ବିନାଶ ହୁଅନ୍ତି । ସବୁରି ଭାଗ୍ୟଡୋରି ତାଙ୍କରି ହାତରେ । ତେଣୁ କେବଳ ତାଙ୍କରି ହିଁ ଉପାସନା କରାଯିବା ଉଚିତ । ଏହି ସନାତନ ସତ୍ୟଟିକୁ ଘୋଷଣା କରି ବେଦ କହିଛି :

> "ଅନନ୍ତ ପରାକ୍ରମୀ ଜଗଦୀଶ୍ୱରଙ୍କ ବିନା କେହି ମଧ୍ୟ ଏହି ବିଚିତ୍ର ଜଗତର ରଚନା, ଧାରଣ ଏବଂ ପ୍ରଳୟ କରିବାକୁ ସମର୍ଥ ହୋଇପାରନ୍ତି ନାହିଁ । ଏଣୁ ତାଙ୍କୁ ଛାଡ଼ି ଅନ୍ୟ କାହାର ଉପାସନା କେହି କରିବା ଉଚିତ ନୁହେଁ ।"

ଋଗ୍‌ବେଦ, ପ୍ରଥମ ମଣ୍ଡଳ, ସୂକ୍ତ-୧୫୪, ମନ୍ତ୍ର-୩

ଯଦି ଏକ ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କେହି ମନୁଷ୍ୟକୁ ସୃଷ୍ଟି କରିନାହିଁ କିମ୍ୱା ଯଦି ତାଙ୍କ ବ୍ୟତୀତ ଅନ୍ୟ କାହାରି କୃପା ବଳରେ ସେ ବଞ୍ଚିନାହିଁ, ତେବେ ତା' ସେବା ଉପାସନାର ଯୋଗ୍ୟ ମଧ୍ୟ ତାଙ୍କରି ବ୍ୟତୀତ ଦ୍ୱିତୀୟ କେହି ନୁହେଁ । ଏହି ବିଶୁଦ୍ଧ ଏକେଶ୍ୱରବାଦର ଶିକ୍ଷା ବିଭିନ୍ନ ଯୁଗରେ ପୃଥିବୀର ବିଭିନ୍ନ କୋଣରେ ଦିଆଯାଇଛି ଏବଂ ମାନବ ସମାଜକୁ ବାରମ୍ୱାର ସତର୍କ କରିଦିଆଯାଇଛି ଯେ, ସଂସାରରେ ଜଣେମାତ୍ର 'ଈଶ୍ୱର' ଅଛନ୍ତି ଏବଂ କେବଳ ସେଇ ହିଁ ସମସ୍ତ ସେବା-ଉପାସନାର ଅଧିକାରୀ । ଏହାହିଁ ଆଦିଧର୍ମ ଇସ୍‌ଲାମର ମୂଳମନ୍ତ୍ର :

"ଲା ଇଲାହ ଇଲ୍‌ଲ୍ଲାହ ।"

ଦିବ୍ୟଧର୍ମର ଏହି ଅଟଳ ସିଦ୍ଧାନ୍ତ ଆଜି ମଧ୍ୟ ବିଶ୍ୱର ପ୍ରମୁଖ ଧର୍ମଗ୍ରନ୍ଥମାନଙ୍କର ପୃଷ୍ଠା ମଣ୍ଡନ କରୁଛି । ସୁତରାଂ ପ୍ରାଚୀନ ବେଦାନ୍ତର ବ୍ରହ୍ମସୂତ୍ରଟି ହେଉଛି :

"ଏକମ୍ ବ୍ରହ୍ମ, ଦ୍ୱିତୀୟ ନାସ୍ତି, ନେହ ନା ନାସ୍ତି କିଂଚନ ।"

ଅର୍ଥାତ୍, ଏକମାତ୍ର ଈଶ୍ୱର ଅଛନ୍ତି, ଦ୍ୱିତୀୟ କେହି ନାହାନ୍ତି, ଟିକିଏ ବି ନାହାନ୍ତି ।

ବ୍ରହ୍ମସୂତ୍ରକୁ ଆରବୀ ଭାଷାରେ ପଢ଼ିଲେ ଏହା ହେବ :

"ଲା ଇଲାହା ଇଲ୍‌ଲ୍ଲାହ ।"

ଏହା ହିଁ ଇସ୍‌ଲାମର ମୂଳମନ୍ତ୍ର । ବ୍ରହ୍ମସୂତ୍ର କେବଳ ଭାଷା ପରିବର୍ତ୍ତନ କରିଛି ।

ଉପନିଷଦରେ ପରମେଶ୍ୱରଙ୍କୁ କୁହାଯାଇଛି :

"एकोमेव द्बितीयम् ।"

"ଏକମେବ ଦ୍ୱିତୀୟମ୍ ।"



ଛାନ୍ଦୋଗ୍ୟ ଉପନିଷଦ ଷଷ୍ଠ ଅଧ୍ୟାୟ, ଦ୍ୱିତୀୟ ଅନୁଚ୍ଛେଦ, ମନ୍ତ୍ର-୧

ଅର୍ଥାତ୍, ପରମେଶ୍ୱର ଏକ ଏବଂ ଅଦ୍ୱିତୀୟ ଅଟନ୍ତି ।

ବାଇବଲ୍‌ରେ ଉଲ୍ଲେଖ ଅଛି ଯେ, ମହାମାନ୍ୟ ଯୀଶୁଙ୍କୁ ପ୍ରଶ୍ନ କରାଗଲା ଯେ, ଈଶ୍ୱରଙ୍କ ସମସ୍ତ ଆଜ୍ଞାଗୁଡ଼ିକ ମଧ୍ୟରୁ କେଉଁ ଗୋଟିକ ସର୍ବପ୍ରଧାନ ? ମହାମାନ୍ୟ ଯୀଶୁ ଉତ୍ତର ଦେଲେ :

"ପ୍ରଧାନ ଆଜ୍ଞା ଏହି, ହେ ଇସ୍ରାଏଲ ଶୁଣ, ପ୍ରଭୁ, ଆମମାନଙ୍କର ଈଶ୍ୱର ଏକମାତ୍ର ପ୍ରଭୁ ଅଟନ୍ତି ।"

ବାଇବେଲ୍, ମାର୍କ ୧୨ : ୨୯

ଈଶ୍ୱରଙ୍କର ସଂକ୍ଷିପ୍ତ ପରିଭାଷା ବର୍ଣ୍ଣନା କରିଛି ପବିତ୍ର କୁର୍‌ଆନର ୧୧୨ ନମ୍ବର ଅଧ୍ୟାୟ । ଚାରିଧାଡ଼ି ବିଶିଷ୍ଟ ଏହି କ୍ଷୁଦ୍ର ଅଧ୍ୟାୟଟି ଉପାସ୍ୟର ମାନଦଣ୍ଡ ଦେଇଛି :

''କହିଦିଅ ! ସେ ଅଲ୍ଲାହ୍ ଏକ ଅଟନ୍ତି । ସେ କାହା ଉପରେ ନିର୍ଭରଶୀଳ ନୁହଁନ୍ତି (ସମସ୍ତେ ତାଙ୍କ ଉପରେ ନିର୍ଭରଶୀଳ) । ତାଙ୍କଠାରୁ କେହି ଜନ୍ମ ନେଇନାହିଁ ଏବଂ ତାଙ୍କୁ କେହି ଜନ୍ମ ଦେଇନାହିଁ ଏବଂ କେହି ତାଙ୍କର ସମକକ୍ଷ ନୁହେଁ ।''

କୁର୍‌ଆନ ୧୧୨ : ୧-୪

କୁର୍‌ଆନର ଏହି ଛୋଟ ଅଧ୍ୟାୟଟି ପ୍ରକୃତ ଉପାସ୍ୟକୁ ଚିହ୍ନିବାର ମାପକାଠି । ତେଣୁ ଅନ୍ୟ ଅଧ୍ୟାୟଗୁଡ଼ିକ ତୁଳନାରେ ଏହାର ବିଶେଷ ମହତ୍ତ୍ୱ ରହିଛି ।

୧. ଏହି ଅଧ୍ୟାୟର ପ୍ରଥମ ବାକ୍ୟଟି କହେ ଯେ, ଅଲ୍ଲାହ୍ ବା ପରମେଶ୍ୱର ଏକ ଏବଂ ଅଦ୍ୱିତୀୟ । ତେଣୁ ଏହି ସୂତ୍ର ଅନୁସାରେ ଈଶ୍ୱର ଅଦ୍ୱିତୀୟ ହେବା ଆବଶ୍ୟକ ।

୨. ଦ୍ୱିତୀୟ ବାକ୍ୟଟି କହେ ଯେ, ''ଈଶ୍ୱର କାହା ଉପରେ ନିର୍ଭରଶୀଳ ନୁହନ୍ତି ।'' ଅର୍ଥାତ୍, ତାଙ୍କୁ କାହାରି ସହାୟତାର ଆବଶ୍ୟକତା ନାହିଁ । ଏହି ସୂତ୍ର ଅନୁସାରେ ଯାହାକୁ ମଧ୍ୟ କୌଣସି ସହାୟତା ଦରକାର, ସେ ଈଶ୍ୱର ନୁହେଁ । ଆମେ ଏହା ଜାଣୁ ଯେ ସୃଷ୍ଟିର ସମସ୍ତ ପ୍ରାଣୀ ଓ ଜଡ଼ଜଗତ ନିର୍ଭରଶୀଳ ।

୩. ତୃତୀୟ ବାକ୍ୟଟି କହୁଛି ଯେ, ''ଈଶ୍ୱରଙ୍କଠାରୁ କେହି ଜନ୍ମ ହୋଇନାହିଁ ବା ତାଙ୍କୁ କେହି ଜନ୍ମ ଦେଇ ନାହିଁ । ଅର୍ଥାତ୍, ତାଙ୍କର ବାପା-ମାଆ ବା ପତ୍ନୀ-ସନ୍ତାନ ନାହାନ୍ତି । ସେ ଅଜନ୍ମା । ଏହି ସୂତ୍ର ଅନୁସାରେ ସଂସାରରେ ଜନ୍ମଲାଭ କରିଥିବା ବା କାହାରିକୁ ଜନ୍ମ ଦେଇଥିବା କୌଣସି ପ୍ରାଣୀ ଈଶ୍ୱର ନୁହେଁ ।

୪. ଚତୁର୍ଥ ବାକ୍ୟ ଶେଷରେ କହିଛି ଯେ, କେହିହେଲେ ତାଙ୍କ ସମକକ୍ଷ ନୁହେଁ । ଅର୍ଥାତ୍, କାହାରିକୁ ତାଙ୍କ ସହ ତୁଳନା କରାଯାଇପାରିବ ନାହିଁ । ସେ ଅତୁଳନୀୟ, ଅନୁପମ ଏବଂ କାହା ସଦୃଶ ନୁହଁନ୍ତି । ଏହି ସୂତ୍ର ଅନୁସାରେ ଏକ ନିରାକାର ବ୍ରହ୍ମଙ୍କ ବ୍ୟତୀତ ସୃଷ୍ଟିର କୌଣସି ଜୀବ-ଜଡ଼ ଈଶ୍ୱର ବା ଉପାସ୍ୟ ନୁହେଁ ।

ତେଣୁ ଜଣେ ଈଶ୍ୱର କି ନୁହଁ ପରୀକ୍ଷା କରିବା ପାଇଁ କୁର୍‌ଆନର ଏହି ସୂତ୍ର ପ୍ରୟୋଗ କରାଯାଇପାରେ । ଉଦାହରଣ ସ୍ୱରୂପ, ମହାମାନ୍ୟ ମୁହମ୍ମଦ ଈଶ୍ୱର କି ଈଶ୍ୱର ନୁହଁନ୍ତି, ଆସନ୍ତୁ ପରୀକ୍ଷା କରିବା ।

୧. ପ୍ରଥମ ସୂତ୍ର ହେଉଛି—ଈଶ୍ୱର ଏକ ଏବଂ ଅଦ୍ୱିତୀୟ । କିନ୍ତୁ ମହାମାନ୍ୟ ମୁହମ୍ମଦ ଏକ ଏବଂ ଅଦ୍ୱିତୀୟ ନୁହଁନ୍ତି । ସେ ଈଶ୍ୱରଙ୍କର ସହସ୍ର ଧର୍ମପ୍ରବର୍ତ୍ତକମାନଙ୍କ ମଧ୍ୟରୁ ଜଣେ । ତେଣୁ ସେ ଈଶ୍ୱର ନୁହନ୍ତି ।

୨. ଦ୍ୱିତୀୟ ସୂତ୍ର ହେଉଛି—ଈଶ୍ୱର ନିର୍ଭରଶୀଳ ନୁହନ୍ତି । କିନ୍ତୁ ମହାମାନ୍ୟ ମୁହମ୍ମଦ ଅନ୍ୟ ଉପରେ ନିର୍ଭରଶୀଳ ଥିଲେ । ଜୀବନ ନିର୍ବାହ ପାଇଁ ଅନ୍ୟମାନଙ୍କ ପରି ତାଙ୍କୁ ଅନ୍ୟର ସହାୟତାର ଆବଶ୍ୟକତା ପଡୁଥିଲା । ସୁତରାଂ ସେ ଈଶ୍ୱର ହୋଇନପାରନ୍ତି ।

୩. ତୃତୀୟ ସୂତ୍ର ଅନୁସାରେ ଈଶ୍ୱରଙ୍କଠାରୁ କେହି ଜନ୍ମ ନେଇନାହିଁ କିମ୍ବା ତାଙ୍କୁ କେହି ଜନ୍ମ ଦେଇନାହିଁ । ଇତିହାସରୁ ଆମେ ଜାଣୁ ଯେ, ମହାମାନ୍ୟ ମୁହମ୍ମଦଙ୍କର ପିତାମାତା ଥିଲେ ଏବଂ ସନ୍ତାନ ମଧ୍ୟ ଥିଲେ । ତେଣୁ ସେ ଈଶ୍ୱର ନୁହନ୍ତି ।

୪. ଚତୁର୍ଥ ସୂତ୍ର ଅନୁସାରେ ଈଶ୍ୱରଙ୍କ ପରି କେହି ନାହିଁ । ସେ ଅତୁଳନୀୟ ଓ ଅନୁପମ । ବ୍ରହ୍ମାଣ୍ଡରେ ଯାହାକୁ ମଧ୍ୟ ଈଶ୍ୱରଙ୍କ ସହ ତୁଳନା କରାଯାଉ, ସେ ଈଶ୍ୱର ନୁହେଁ । ମହାମାନ୍ୟ ମୁହମ୍ମଦ ମଧ୍ୟ ନୁହଁନ୍ତି ।

ପବିତ୍ର କୁର୍‌ଆନର ଏହି କଷଟିରେ କେବଳ ସ୍ୱୟଂ ଅନନ୍ତ, ଅଜନ୍ମା, ଅବିନାଶୀ ଓ ନିରାକାର ବ୍ରହ୍ମଙ୍କ ବ୍ୟତୀତ ଅନ୍ୟ କାହାରି ଈଶ୍ୱର ହେବାର ଯୋଗ୍ୟତା ନାହିଁ । ସୁତରାଂ ପୂଜା-ଉପାସନା ପାଇବାର ଅଧିକାର ମଧ୍ୟ ନାହିଁ ।

ବିଶ୍ୱର କୋଟି କୋଟି ମୁସଲିମ୍ ମହାମାନ୍ୟ ମୁହମ୍ମଦଙ୍କୁ ଆନ୍ତରିକ ଭକ୍ତି ଓ ସମ୍ମାନ କରନ୍ତି ଏବଂ ତାଙ୍କୁ ନିଜ ଜୀବନର ଆଦର୍ଶ ରୂପେ ଗ୍ରହଣ କରନ୍ତି; କିନ୍ତୁ ତାଙ୍କୁ ଈଶ୍ୱର ମାନନ୍ତି ନାହିଁ କିମ୍ବା ତାଙ୍କର ଉପାସନା କରନ୍ତି ନାହିଁ ।

ଈଶ୍ୱରଙ୍କର ସମାନ ପରିଭାଷା ବେଦ ମଧ୍ୟ ଦିଅନ୍ତି । ଯଜୁର୍ବେଦ କହେ :

"ହେ ମନୁଷ୍ୟଗଣ ! ଯେଉଁ ପରମେଶ୍ୱର ସମସ୍ତ ଐଶ୍ୱର୍ଯ୍ୟବାନ୍,
କାହାରି ସଦୃଶ ନୁହଁନ୍ତି, ଅନନ୍ତ ବିଦ୍ୟାଯୁକ୍ତ, ଉତ୍ପନ୍ନ ହୁଅନ୍ତି ନାହିଁ,

ହୋଇନଥିଲେ ବା ହେବେନାହିଁ ଏବଂ ସମସ୍ତଙ୍କଠାରୁ ବଡ଼ ଅଟନ୍ତି, ତାହାଙ୍କର ତୁମ୍ଭେମାନେ ନିରନ୍ତର ଉପାସନା କର ।''

ଯଜୁର୍ବେଦ, ଅଧ୍ୟାୟ-୩୩, ମନ୍ତ୍ର-୭୯

ରଗ୍‌ବେଦ କହେ :

''ଯେ ସମସ୍ତଙ୍କର ସ୍ୱାମୀ, ଅନ୍ତର୍ଯ୍ୟାମୀ, ବ୍ୟାପକ ଏବଂ ସକଳ ଐଶ୍ୱର୍ଯ୍ୟର ଦାତା, ଯାହାଙ୍କର ଅନ୍ୟ କେହି ଈଶ୍ୱର ନାହାନ୍ତି; ଯେ ଅନ୍ୟ କାହାରି ସହାୟତା ଇଚ୍ଛା କରନ୍ତି ନାହିଁ, ତାହାଙ୍କୁ ସକଳ ମନୁଷ୍ୟ ଇଷ୍ଟବୁଦ୍ଧି ଦ୍ୱାରା ସେବା କରିବା ଉଚିତ । ଯେଉଁ ମନୁଷ୍ୟ ସେହି ପରମେଶ୍ୱରଙ୍କୁ ଛାଡ଼ି ଅନ୍ୟଙ୍କୁ ଇଷ୍ଟଦେବ ମାନୁଅଛି, ସେହି ଭାଗ୍ୟହୀନ ବଡ଼ ବଡ଼ ଘୋର ଦୁଃଖକୁ ସଦା ପ୍ରାପ୍ତ ହେଉଅଛି ।''

ରଗ୍‌ବେଦ, ପ୍ରଥମ ମଣ୍ଡଳ, ସୂକ୍ତ-୭, ମନ୍ତ୍ର-୯

ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କେହି ରକ୍ଷକ ବା ହାନିଲାଭକାରକ ନୁହେଁ ବୋଲି ବର୍ଣ୍ଣନା କରି ବେଦ କୁହେ :

''ଚେତନ ସ୍ୱରୂପ ପରମାତ୍ମାଙ୍କର ଉପାସନାକୁ ଛାଡ଼ି ଅନ୍ୟ କୌଣସି ଜଡ଼ର ଉପାସନା କେବେ ନ କରିବା ଉଚିତ, କାରଣ ଉପାସନା ଅର୍ଥାତ୍ ସେବା କରାହେଉଥିବା ଜଡ଼ପଦାର୍ଥ ହାନି-ଲାଭକାରକ ଏବଂ ରକ୍ଷକ ହୁଏ ନାହିଁ । ଏଣୁ ଚିତ୍ତବାନ ସମସ୍ତ ଜୀବ ଚେତନସ୍ୱରୂପ ଜଗଦୀଶ୍ୱରଙ୍କର କେବଳ ଉପାସନା କରିବା ଉଚିତ ଅଟେ । ଅନ୍ୟ ଜଡ଼ତା ଆଦି ଗୁଣଯୁକ୍ତ ପଦାର୍ଥ ଉପାସ୍ୟ ନୁହଁନ୍ତି ।''

ଯଜୁର୍ବେଦ, ଅଧ୍ୟାୟ-୨୨, ମନ୍ତ୍ର-୧୦

ସମାନ କଥା ପବିତ୍ର କୁର୍‌ଆନ କହେ :

''ଏବଂ ଏମାନେ ଅଲ୍ଲାହ୍‌ଙ୍କ ବ୍ୟତୀତ ଯେଉଁମାନଙ୍କର ଉପାସନା କରନ୍ତି, ସେମାନେ ତାଙ୍କର ନା କୌଣସି ଅନିଷ୍ଟ କରିପାରନ୍ତି ନା କୌଣସି ଉପକାର କରିପାରନ୍ତି ।''

କୁର୍‌ଆନ ୧୦ : ୧୮

ଏକ ଈଶ୍ୱର ହିଁ ରକ୍ଷକ ଏବଂ ପରିତ୍ରାଣକର୍ତ୍ତା ବୋଲି ଘୋଷଣା କରି ବାଇବେଲ କହୁଛି–

"ଆମ୍ଭେ ଆମ୍ଭେ ହିଁ ସଦାପ୍ରଭୁ ଅଟୁ ଓ ଆମ୍ଭଛଡ଼ା ଆଉ ତ୍ରାଣକର୍ତ୍ତା ନାହିଁ ।"

**ବାଇବଲ୍, ଇଶାୟିୟ, ୪୩-୧୧**

ଏକ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କ ପାଇଁ ପୂଜା-ଉପାସନାକୁ ନିଷିଦ୍ଧ କରି ବାଇବେଲ୍ ଆଦେଶ ଦିଏ :

"ଆମ୍ଭ ସାକ୍ଷାତରେ ତୁମ୍ଭର ଆଉ କୌଣସି ଦେବତା ହେବ ନାହିଁ । ତୁମ୍ଭେ ଆପଣା ନିମନ୍ତେ କୌଣସି ଖୋଦିତ ପ୍ରତିମା ନିର୍ମାଣ କରିବ ନାହିଁ, କି ଉପରିସ୍ଥ ସ୍ୱର୍ଗରେ, କି ନୀଚସ୍ଥ ପୃଥିବୀରେ, କି ପୃଥିବୀର ନୀଚସ୍ଥ ଜଳରେ ଥିବା କୌଣସି ବସ୍ତୁର ପ୍ରତିମୂର୍ତ୍ତି ନିର୍ମାଣ କରିବ ନାହିଁ । ତୁମ୍ଭେ ସେମାନଙ୍କୁ ପ୍ରଣାମ କରିବ ନାହିଁ କି ସେମାନଙ୍କର ସେବା କରିବ ନାହିଁ, ଯେହେତୁ ଆମ୍ଭେ ତୁମ୍ଭର ସଦାପ୍ରଭୁ ପରମେଶ୍ୱର ସ୍ୱଗୌରବ-ରକ୍ଷଣରେ ଉଦ୍‌ଯୋଗୀ ପରମେଶ୍ୱର ଅଟୁ ।"

**ବାଇବଲ୍, ଯାତ୍ରା ପୁସ୍ତକ, ୨୦ : ୩-୫**

ସେହିପରି କୁର୍‌ଆନ ମଧ୍ୟ ସମସ୍ତ ଉପାସନାଗୁଡ଼ିକୁ ଈଶ୍ୱରଙ୍କର ଅଧିକାର ବୋଲି ଘୋଷଣା କରି କହିଛି :

"(ହେ ମୁହମ୍ମଦ) ତୁମ୍ଭେ ସେମାନଙ୍କୁ କହିଦିଅ ଯେ, ମୋର ନମାଜ, ମୋର ସମସ୍ତ ଉପାସନା, ମୋର ଜୀବନ-ମରଣ ସବୁକିଛି ଜଗତର ପାଳନକର୍ତ୍ତା ଅଲ୍ଲାହ୍‌ଙ୍କ ପାଇଁ ଉଦ୍ଦିଷ୍ଟ, ଯିଏ ସାରା ଜଗତର ପାଳନକର୍ତ୍ତା ଅଟନ୍ତି ।"

**କୁର୍‌ଆନ ୬ : ୧୬୨**

କୁର୍‌ଆନ ଏହା ମଧ୍ୟ ସ୍ପଷ୍ଟ କହୁଛି ଯେ, ପୃଥିବୀପୃଷ୍ଠରେ ଆସିଥିବା ଈଶ୍ୱରଙ୍କର ସମସ୍ତ ଧର୍ମଦୂତମାନେ ଏହି ସିଦ୍ଧାନ୍ତର ପ୍ରଚାର କରିଥିଲେ । ସୁତରାଂ କୁର୍‌ଆନ କହେ :

"(ହେ ମୁହମ୍ମଦ) ଏବଂ ଆମ୍ଭେ ତୁମ ପୂର୍ବରୁ ଯେତେଜଣ ବାର୍ତ୍ତାବହ (ରସୁଲ) ପ୍ରେରଣ କରିଅଛୁ, ସେମାନଙ୍କ ମଧ୍ୟରୁ

ପ୍ରତ୍ୟେକଙ୍କୁ ଆମ୍ଭେ ଏହାହିଁ ଆଦିଷ୍ଟବାଣୀ କରିଥିଲୁ ଯେ, ଆମ୍ଭ ବ୍ୟତୀତ କେହି ଉପାସନା ଯୋଗ୍ୟ ନୁହେଁ, ଏଣୁ ଆମ୍ଭର ହିଁ ଉପାସନା କର ।''

କୁର୍‌ଆନ ୨୧ : ୨୫

କୁର୍‌ଆନ ଶିକ୍ଷା ଦିଏ ଯେ, ପରମେଶ୍ୱର ନିରାକାର ଏବଂ କେହି ତାଙ୍କ ସଦୃଶ ନୁହେଁ । ଅର୍ଥାତ୍, ସୃଷ୍ଟିର କୌଣସି ସଜୀବ ବା ନିର୍ଜୀବକୁ ତାଙ୍କ ସମତୁଲ୍ୟ କରାଯାଇ ନପାରେ ।

''କୌଣସି ବସ୍ତୁ ତାଙ୍କ ସଦୃଶ ନୁହେଁ ।''
କୁର୍‌ଆନ ୪୨ : ୧୧

ସମାନ ଶିକ୍ଷା ବେଦ ଦିଏ :

''ନ ତସ୍ୟ ପ୍ରତିମା ଅସ୍ତି ।''
ଅର୍ଥାତ୍, ତାଙ୍କର କୌଣସି ପ୍ରତିମା ନାହିଁ ।
ଯଜୁର୍ବେଦ, ଅଧ୍ୟାୟ-୩୨, ମନ୍ତ୍ର-୩

ଠିକ୍ ସେଇ ଶିକ୍ଷା ବାଇବଲ୍‌ରେ ମଧ୍ୟ ରହିଛି :

''ଆଉ ତୁମ୍ଭେମାନେ ପ୍ରତିମାଗଣର ପଶ୍ଚାଦ୍‌ଗାମୀ ହୁଅ ନାହିଁ ଓ ଆପଣାମାନଙ୍କ ନିମନ୍ତେ ଛାଞ୍ଚରେ ଢ଼ଳା ଦେବତା ନିର୍ମାଣ କର ନାହିଁ । ଆମ୍ଭେ ସଦାପ୍ରଭୁ ତୁମ୍ଭମାନଙ୍କର ପରମେଶ୍ୱର ଅଟୁ ।''
ବାଇବଲ୍, ଲେବୀୟ ପୁସ୍ତକ ୧୯ : ୪

ଏହି କାରଣରୁ ସମସ୍ତ ପ୍ରକାରର ପୂଜା ଉପାସନାର କର୍ମଗୁଡ଼ିକ ଏକ ନିରାକାର ବ୍ରହ୍ମ ଅଲ୍ଲାହ୍‌ଙ୍କ ପାଇଁ କରିବା ଅନିବାର୍ଯ୍ୟ । ତେଣୁ ସୃଷ୍ଟିର ଅନ୍ୟ କାହାରିକୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ କରାଯାଉଥିବା ଉପାସନାଜନିତ ସମସ୍ତ କର୍ମକାଣ୍ଡଗୁଡ଼ିକୁ ଇସ୍‌ଲାମରେ ନିଷିଦ୍ଧ କରାଯାଇଛି ।

ପ୍ରକୃତରେ ଜଣକ ପ୍ରତି ସମର୍ପିତ ହେବାରେ ଯେଉଁ ଆନନ୍ଦ ଏବଂ ଜଣକ ସେବା-ଆନୁଗତ୍ୟରେ ଯେଉଁ ଶାନ୍ତି ଅଛି, ତାହା କେବଳ ଅନୁଭବୀ ହିଁ ଜାଣନ୍ତି । ଯେଉଁ ଭୃତ୍ୟଟିର ଜଣେ ସ୍ୱାମୀ ଥାଏ, ତା' ଅବସ୍ଥା ସେ ଭୃତ୍ୟଠାରୁ ନିଶ୍ଚିତ ଭାବରେ ଭଲ, ଯାହା ମାଲିକଙ୍କ ସଂଖ୍ୟା ଅନେକ । ଏକାଧିକ ସ୍ୱାମୀଙ୍କର

ଆଦେଶ ପାଳନ କରିବା ଏବଂ ସମସ୍ତଙ୍କୁ ସନ୍ତୁଷ୍ଟ କରିବା ଏକ ଅପ୍ରାକୃତିକ ଅବସ୍ଥା । ଏପରି ଝିଞ୍ଜଟରୁ ସେ ମୁକ୍ତ ଥାଏ । ଏହାଛଡ଼ା ବିଭିନ୍ନ ଦୁଃଖ ବିପଦ ପାଇଁ ଭିନ୍ନ ଭିନ୍ନ ପ୍ରଭୁଙ୍କୁ ଡାକିବାର ସମସ୍ୟା ତା'ର ନଥାଏ । ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ ତାଙ୍କ ପୁସ୍ତକ 'ସନାତନ ଧର୍ମର ସାରକଥା'ରେ ଏହି ସମସ୍ୟାଗୁଡ଼ିକୁ ନିଜ ଭାଷାରେ ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି :

"ହିନ୍ଦୁମାନଙ୍କ ଧର୍ମଶାସ୍ତ୍ରରେ ବିଭିନ୍ନ ଦେବାଦେବୀ ଓ ସର୍ବୋପରି ପରମେଶ୍ୱରଙ୍କ ଶକ୍ତି, ମହିମା, କ୍ଷମତାର ଗୁଣାତ୍ମକ ଓ ପରିମାଣାତ୍ମକ ତାରତମ୍ୟ ରହିଛି । ଉଦାହରଣ ସ୍ୱରୂପ, ଆମ ଗ୍ରାମଦେବତୀ କୁତାମଚଣ୍ଡୀଙ୍କର ଦୁଃଖ-ବିପଦ ନିବାରଣ କ୍ଷମତା ଜଗନ୍ନାଥଙ୍କ ଶକ୍ତି, କ୍ଷମତା ଓ ମହିମାଠାରୁ ବହୁ କମ୍ । ଆଖଣ୍ଡଳମଣି ମହାଦେବଙ୍କର ଶକ୍ତି, କ୍ଷମତା ଓ ମହିମା ସ୍ୱପ୍ନେଶ୍ୱର ମହାଦେବଙ୍କଠାରୁ ବହୁତ ବେଶୀ । ତା' ଛଡ଼ା କୋଉ ଦେବଦେବୀ କେବଳ ଧନସମ୍ପଦ ଦେଇପାରିବେ, ମାତ୍ର ରୋଗ ଭଲ କରିପାରିବେ ନାହିଁ । କୋଉ ଦେବଦେବୀ ଆକସ୍ମିକ ସୌଭାଗ୍ୟ ଦେଇପାରିବେ, ମାତ୍ର ଜ୍ଞାନ ବା ସ୍ୱାସ୍ଥ୍ୟ-ସମ୍ପଦ ଦେବା ତାଙ୍କ ହାତରେ ନାହିଁ । ଏପରି ଦେବାଦେବୀ ଅଛନ୍ତି, ଯେଉଁମାନେ କେବଳ ପାହାଡ଼ ଜଙ୍ଗଲ ଭିତରେ ବାଟ ଦେଖାଇପାରିବେ ବା ସେଇ ପାହାଡ଼ ଜଙ୍ଗଲ ଭିତରେ ଜାଙ୍ଗଲିକ ଆପଦ-ବିପଦରୁ ରକ୍ଷା କରିପାରିବେ, କିନ୍ତୁ ସମତଳ ଭୂମିରେ ତାଙ୍କର ମହିମା କାମ୍ଚ କରିପାରିବ ନାହିଁ । କୋଉ ଦେବଦେବୀ ଜ୍ୱର, ସର୍ଦ୍ଦି, କାଶ ପ୍ରଭୃତି ରୋଗ ଭଲ କରିଦେବେ; ମାତ୍ର କୁଷ୍ଠ, ଯକ୍ଷ୍ମା, କ୍ୟାନ୍‌ସର୍ ଇତ୍ୟାଦି ପାଇଁ ଆହୁରି ବଡ଼ ବଡ଼ ଦେବାବେଦୀଙ୍କୁ ପ୍ରାର୍ଥନା ଆରାଧନା କରିବାକୁ ପଡ଼ିବ ।

ଏସବୁ ଦିଗରୁ ଦେଖିବାକୁ ଗଲେ, ହିନ୍ଦୁଧର୍ମରେ ବହୁ ଦେବଦେବୀ ଓ ଭଗବାନମାନଙ୍କ ସମାବେଶ ହେତୁ ଜଣେ ତା'ର କୋଉ ଦୁଃଖ ବିପଦ ପାଇଁ ଯେଉଁ ଦେବଦେବୀ, ଭଗବାନ ଭଗବତୀଙ୍କୁ ଡାକିବା ଉଚିତ, ସେଥିରେ ତା'ର ଉଚିତ ଜ୍ଞାନ ଥିବା ଉଚିତ । କିନ୍ତୁ

> ଖ୍ରୀଷ୍ଟିୟାନ ଧର୍ମ ଓ ସର୍ବୋପରି ଇସ୍‌ଲାମ ଧର୍ମରେ ଏସବୁ ନେଇ କୌଣସି ଗୋଳମାଳ ନାହିଁ । ଅଲ୍ଲାହ୍ ହିଁ ସର୍ବଶକ୍ତିମାନ୍ ପରମେଶ୍ୱର । ତାଙ୍କର ଅସାଧ କିଛି ନାହିଁ । ତାଙ୍କୁ ପ୍ରାର୍ଥନା କର । ତାଙ୍କର କୃପା ହେଲେ ସେ ତୁମକୁ ଦୁଃଖ ବିପଦରୁ ମୁକ୍ତ କରିବେ । ଆଉ ଏଣୁ ତେଣୁ ତଥାକଥିତ ଦେବଦେବୀଙ୍କ ଅରଣ୍ୟରେ ପଶିଲେ କେବଳ ହଇରାଣ ହିଁ ସାର ହେବ, ଦୁଃଖ ବିପଦ ଘୁଞ୍ଚିବ ନାହିଁ ।''+

ଏହିସବୁ ସମସ୍ୟାଗୁଡ଼ିକରୁ ମୁକ୍ତି ପାଇଁ ପବିତ୍ର କୁର୍‌ଆନ ଏକେଶ୍ୱରବାଦର ଉପକାରିତା ବିଷୟରେ ସୁନ୍ଦର ଉଦାହରଣ ଦେଇ କହିଛି :

> ''ଅଲ୍ଲାହ୍ ଉଦାହରଣ ଦେଉଛନ୍ତି ଯେ, ଜଣେ ବ୍ୟକ୍ତିର ଅନେକ ମାଲିକ ଅଛନ୍ତି, ଯେଉଁମାନେ କି ପରସ୍ପର ମଧ୍ୟରେ ଭିନ୍ନ ମତପୋଷଣ କରନ୍ତି ଏବଂ ଅନ୍ୟ ଜଣେ ଏପରି ବ୍ୟକ୍ତି ଅଛି ଯିଏ କି ସମ୍ପୂର୍ଣ୍ଣ ଭାବେ ଜଣକର (ଅଧୀନସ୍ଥ ଦାସ) । କ'ଣ ଏ ଦୁହିଁଙ୍କର ଅବସ୍ଥା ସମାନ ହୋଇପାରେ ? ସମସ୍ତ ପ୍ରଶଂସା ଅଲ୍ଲାହ୍‌ଙ୍କ ପାଇଁ ଉଦ୍ଦିଷ୍ଟ, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଜାଣନ୍ତି ନାହିଁ ।''
>
> କୁର୍‌ଆନ ୩୯ : ୨୯





+ ସନାତନ ଧର୍ମର ସାରକଥା, ମହାପାତ୍ର ନୀଳମଣି ସାହୁ, ପୃ-୧୪୧

# ଅଲ୍ଲାହ୍ ଈଶ୍ୱରଙ୍କର ଆରବୀ ନାମ

ଯିଏ ବ୍ରହ୍ମାଣ୍ଡକୁ ସୃଷ୍ଟି କରିଛନ୍ତି, ଯିଏ ସମସ୍ତ ଜୀବଜଗତର ପାଳନକର୍ତ୍ତା ଏବଂ ଯାହାଙ୍କ ଆଜ୍ଞାରେ ସାରାଜଗତ ପରିଚାଳିତ, ସେହି ବ୍ରହ୍ମାଣ୍ଡର ଅଦ୍ୱିତୀୟ ଅଧିପତିଙ୍କୁ ଇସ୍‌ଲାମରେ 'ଅଲ୍ଲାହ୍' କୁହାଯାଏ । ଓଡ଼ିଆ ଅଭିଧାନ ଅନୁସାରେ ଈଶ୍ୱର ଅର୍ଥ God ବା The Lord of the Universe, ଅର୍ଥାତ୍ ବ୍ରହ୍ମାଣ୍ଡର ଅଧିପତି ।

ସ୍ୱୟଂ ଈଶ୍ୱର ନିଜର ପରିଚୟ ଦେଇ କୁହନ୍ତି :

''ଅଲ୍ଲାହ୍ ସେହି, ଯିଏ ଆକାଶ ମଣ୍ଡଳ ଓ ପୃଥିବୀକୁ ସୃଷ୍ଟି କରିଛନ୍ତି ଏବଂ ଆକାଶରୁ ଜଳବର୍ଷା କରି ତା'ଦ୍ୱାରା ତୁମ୍ଭମାନଙ୍କର ଜୀବନ ଧାରଣ ପାଇଁ ଫଳମାନ ଉତ୍ପନ୍ନ କରିଛନ୍ତି; ନୌକାକୁ ତୁମ ପାଇଁ ନିୟନ୍ତ୍ରିତ କରିଛନ୍ତି, ଯେପରିକି ତାହା ତାଙ୍କ ଆଦେଶରେ ସମୁଦ୍ରରେ ଚଳାଚଳ କରିବ ଏବଂ ନଦନଦୀଗୁଡ଼ିକୁ ସେ ତୁମ ଅଧିନସ୍ଥ କରିଛନ୍ତି; ସୂର୍ଯ୍ୟ, ଚନ୍ଦ୍ରଙ୍କୁ ତୁମମାନଙ୍କ ସେବାରେ ଏପରି ନିୟୋଜିତ କରିଛନ୍ତି ଯେ, ସେମାନେ ନିରନ୍ତର ଭାବରେ ନିଜର କାର୍ଯ୍ୟ କରି ଚାଲିଛନ୍ତି ଏବଂ ସେ ଦିନ ଓ ରାତିକୁ ମଧ୍ୟ ତୁମ ସେବାରେ ନିୟୋଜିତ କରିଛନ୍ତି; ଏବଂ ତୁମ୍ଭେମାନେ ତାଙ୍କଠାରୁ ଯାହାକିଛି ଭିକ୍ଷା କରିଅଛ, ସେସବୁ ତୁମ୍ଭମାନଙ୍କୁ ପ୍ରଦାନ କରିଛନ୍ତି; ଏବଂ ଯଦି ତୁମ୍ଭେମାନେ ଅଲ୍ଲାହ୍‌ଙ୍କର କୃପାଗୁଡ଼ିକୁ ଗଣନା କରିବାକୁ ଚାହିଁବ ତେବେ ଗଣି ମଧ୍ୟ ପାରିବ ନାହିଁ । ବାସ୍ତବରେ ମନୁଷ୍ୟ ଅତ୍ୟନ୍ତ ଅନ୍ୟାୟୀ ଓ ଅକୃତଜ୍ଞ ।''

କୁର୍‌ଆନ ୧୪ : ୩୨-୩୪

ଅନ୍ୟ ଏକ ସ୍ଥାନରେ କୁର୍‌ଆନ ଅଲ୍ଲାହ୍‌ଙ୍କ ପରିଚୟ ପ୍ରଦାନ କରି କହିଛି :

''ଅଲ୍ଲାହ୍ ହିଁ ବୀଜ ଓ ଟାକୁଆକୁ ଅଙ୍କୁରିତ କରାନ୍ତି, ସେ ସଜୀବକୁ ନିର୍ଜୀବରୁ ଏବଂ ନିର୍ଜୀବକୁ ସଜୀବରୁ ଉତ୍ପନ୍ନ କରନ୍ତି; ସେଇ ହିଁ ତୁମର ଅଲ୍ଲାହ୍, ପୁଣି ତୁମ୍ଭେମାନେ କିପରି ବାଟବଣା ହୋଇଯାଉଛ ? ସେ ହିଁ ରାତ୍ରିର ପରଦାକୁ ବିଦୀର୍ଣ୍ଣ କରି ପ୍ରଭାତକୁ ପ୍ରକାଶ କରନ୍ତି ଏବଂ ରାତ୍ରିକୁ ବିଶ୍ରାମ ପାଇଁ ତଥା ସୂର୍ଯ୍ୟ, ଚନ୍ଦ୍ରଙ୍କୁ ଗଣନାର ମାଧ୍ୟମ ରୂପେ ଗଢ଼ିଛନ୍ତି । ଏସବୁ ସେହି ସର୍ବଜ୍ଞ (ସତ୍ତା)ଙ୍କ ଦ୍ୱାରା ନିର୍ଦ୍ଧାରିତ । ଏବଂ ସେ ହିଁ ତୁମମାନଙ୍କ ପାଇଁ ନକ୍ଷତ୍ର ସୃଷ୍ଟି କରିଛନ୍ତି ଯଦ୍ୱାରା ତୁମ୍ଭେମାନେ ମରୁଭୂମି ଓ ସମୁଦ୍ରର ଘନ ଅନ୍ଧକାରରେ ମାର୍ଗ ଜାଣିପାରିବ । ଆମ୍ଭେ ଜ୍ଞାନୀଜନଙ୍କ ପାଇଁ (ନିଜର) ନିଦର୍ଶନ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଦେଇଅଛୁ । ଆଉ ସିଏ ଗୋଟିଏ ଜୀବନରୁ ତୁମମାନଙ୍କୁ ସୃଷ୍ଟି କରିଛନ୍ତି ଏବଂ ତା'ପରେ ପ୍ରତ୍ୟେକଙ୍କ ପାଇଁ ଗୋଟିଏ ଅସ୍ଥାୟୀ ଓ ଆଉ ଗୋଟିଏ ସ୍ଥାୟୀ ବାସସ୍ଥାନ ନିର୍ଦ୍ଧାରଣ କରିଛନ୍ତି । ଆମ୍ଭେ ବୁଦ୍ଧିମାନମାନଙ୍କ ପାଇଁ ନିଦର୍ଶନ ଖୁବ୍ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଦେଇଅଛୁ । ଏବଂ ସେହି (ଅଲ୍ଲାହ୍) ହିଁ ଆକାଶରୁ ଜଳ ବର୍ଷା କରାନ୍ତି, ତତ୍ପରେ (ଲକ୍ଷକର କିପରି) ଆମ୍ଭେ ତଦ୍ୱାରା ବିଭିନ୍ନ ପ୍ରକାର ଉଦ୍ଭିଦର ଅଙ୍କୁରୋଦ୍‌ଗମ କରାଉ, ତା'ପରେ ସେଥିରୁ ବହୁ ସବୁଜ କ୍ଷେତ ଉତ୍ପନ୍ନ କରୁ ଯହିଁରୁ ଆମ୍ଭେ ସ୍ତର ସ୍ତର ସଜ୍ଜିତ ଦାନା ବାହାର କରୁ ଏବଂ ଖଜୁରୀ ଗଛର ମୁକୁଳରୁ ଗୁଚ୍ଛ ଗୁଚ୍ଛ ଫଳ ଉତ୍ପନ୍ନ କରୁ, ଯାହା ଫଳ ଭାରରେ ନଇଁପଡ଼େ । ତା'ଛଡ଼ା ଆମ୍ଭେ ଅଙ୍ଗୁର, ଜଳପାଇ ଏବଂ ଡାଳିମ୍ବ ବଗିଚା ସୃଷ୍ଟି କରିଅଛୁ, ଯେଉଁଗୁଡ଼ିକର ଫଳ ପରସ୍ପର ସହ ସଦୃଶ ମାତ୍ର (ବିଶେଷତ୍ୱରେ) ଭିନ୍ନ ଭିନ୍ନ । ଗଛ ଫଳ ଧାରଣ କରିବାବେଳେ ତାର ଫଳ ଓ ପରିପକ୍ୱ ଅବସ୍ଥାକୁ ଲକ୍ଷ କର, ଏଥିରେ ବିଶ୍ୱାସକାରୀମାନଙ୍କ ପାଇଁ ନିଦର୍ଶନମାନ ରହିଛି ।

କୁର୍‌ଆନ ୬ : ୯୫-୯୯

ଅନ୍ୟ ଏକ ସ୍ଥାନରେ କୁର୍‌ଆନ କହିଛି :

''ଏବଂ ସେ ହିଁ ଆକାଶରୁ ଏକ ନିର୍ଦ୍ଦିଷ୍ଟ ପରିମାଣରେ ଜଳବୃଷ୍ଟି କରାନ୍ତି; ତା'ପରେ ଏହାଦ୍ୱାରା ମୃତ ଭୂମିରେ ପ୍ରାଣ ସଞ୍ଚାର କରନ୍ତି;

ଏହିପରି (ଦିନେ) ତୁମେମାନେ ମଧ୍ୟ (ପୁନର୍ଜୀବିତ ହୋଇ) ଉଠିବ ।''

କୁର୍‌ଆନ ୪୩ : ୧୧

ମହାମାନ୍ୟ ଧର୍ମଦୂତ ଇବ୍ରାହିମ୍ ତାଙ୍କ ସମ୍ପ୍ରଦାୟକୁ ଅଲ୍ଲାହ୍‌ଙ୍କ ପରିଚୟ ଦେଇ କହିଥିଲେ :

''ସେ ହିଁ ମୋତେ ଖାଇବା ପିଇବାକୁ ଦିଅନ୍ତି ଏବଂ ଯେତେବେଳେ ମୁଁ ଅସୁସ୍ଥ ହୋଇପଡ଼େ ସେତେବେଳେ ସେ ହିଁ ମୋତେ ଆରୋଗ୍ୟ ପ୍ରଦାନ କରନ୍ତି; ଏବଂ ସେ ହିଁ ମୋତେ ମୃତ୍ୟୁ ଦେବେ ଏବଂ ପୁନର୍ବାର ଜୀବିତ କରିବେ; ଏବଂ ତାଙ୍କରିଠାରେ ମୁଁ ଆଶା ବାନ୍ଧିଛି ଯେ, ଶେଷ ବିଚାର ଦିନ ସେ ମୋର ଦୋଷ କ୍ଷମା କରିଦେବେ ।''

କୁର୍‌ଆନ ୨୬ : ୭୯-୮୨

ବିଭିନ୍ନ ଭାଷାରେ ଈଶ୍ୱରଙ୍କୁ ବିଭିନ୍ନ ନାମରେ ଡକାଯାଏ । କେହି ଈଶ୍ୱର କହେ, କେହି ଭଗବାନ କହେ, କେହି ଖୁଦା ବା ଯେହୋବା ବୋଲି ଡାକେ, ଆଉ କେହି ଗଡ୍ ବା ଏଲାହ କହି ମଧ୍ୟ ତାଙ୍କୁ ସମ୍ବୋଧନ କରେ । ପୃଥିବୀର ବିଭିନ୍ନ ଭାଷାରେ ଶତାଧିକ ନାମରେ ଈଶ୍ୱରଙ୍କୁ ଡକାଯାଏ । ଏହାଛଡ଼ା ତାଙ୍କର ଗୁଣ ଅନୁସାରେ ମଧ୍ୟ ବିଭିନ୍ନ ନାମ ରହିଛି, ଯଥା—ପ୍ରଭୁ, ଦୟାମୟ, ପାଳନକର୍ତ୍ତା, ମଙ୍ଗଳମୟ, ସର୍ବଜ୍ଞ, ସର୍ବଦ୍ରଷ୍ଟା ଇତ୍ୟାଦି । ଆରବୀ ଭାଷାରେ ଏହା ଯଥାକ୍ରମେ— ମାଲିକ, ରହିମ, ରବ୍, ସଲାମ, ଆଲିମ ଓ ନଜିର । ଏକ ଈଶ୍ୱରଙ୍କର ଅନେକ ନାମ ଥିବା କୁର୍‌ଆନରେ ଉଲ୍ଲେଖ ଅଛି :

''ତୁମେ (ସେମାନଙ୍କୁ) କୁହ ''ଅଲ୍ଲାହ୍ ନାମରେ ଡାକ କିମ୍ବା ଦୟାମୟ ନାମରେ, ଯେଉଁ ନାମରେ ତୁମ୍ଭେମାନେ ଡାକିଲେ ମଧ୍ୟ ସମସ୍ତ ଭଲ ନାମ ତାଙ୍କରି ପାଇଁ ଉଦ୍ଦିଷ୍ଟ ।''

କୁର୍‌ଆନ ୧୭ : ୧୧୦

ଠିକ୍ ସେଇକଥା ବେଦ ମଧ୍ୟ କହେ :

''ଏକଂ ସତ୍, ବିପ୍ରା ବହୁଧା ବଦନ୍ତି ।''

ଋଗ୍‌ବେଦ ୧ : ୧୬୪ : ୪୬

ଅର୍ଥାତ୍, ସତ୍ୟ ଗୋଟିଏ, ସାଧୁସନ୍ଥମାନେ ଏକ ଇଶ୍ୱରଙ୍କୁ ଅନେକ ନାମରେ ଡାକନ୍ତି ।

କିନ୍ତୁ କିଛି ଲୋକ ଭାବନ୍ତି ଯେ, 'ଅଲ୍ଲାହ୍' ମୁସଲମାନମାନଙ୍କର ଈଶ୍ୱର । ଏହା ଏକ ଭୁଲ୍ ଧାରଣା । ଭାଷାର ଭିନ୍ନତା ଯୋଗୁଁ ଯଦି ଜଣେ ଆରବୀ ଭାଷାରେ ମା' ପାଇଁ 'ଅମ୍ମୀ', ଓଡ଼ିଆରେ ବୋଉ ବା ଇଂରାଜୀରେ 'ମମ୍' ଶବ୍ଦର ପ୍ରୟୋଗ କରେ, ସେ କୌଣସି ଭୁଲ୍ କରେନାହିଁ । କିନ୍ତୁ ସର୍ତ୍ତ ଏତିକି ଯେ, କଥାଟି ସତ୍ୟ ହେବା ଉଚିତ । ଯାହାକୁ ଅମ୍ମୀ ବା ବୋଉ ରୂପେ ସ୍ୱୀକାର କରାଗଲା, ସେ ପ୍ରକୃତରେ ତା' ଜନ୍ମଦାତ୍ରୀ ହୋଇଥିବା ଉଚିତ—ପତ୍ନୀ ବା ଭଉଣୀ ନୁହେଁ । ଆରବୀ ବାଇବେଲ୍‌ରେ ମଧ୍ୟ ଈଶ୍ୱରଙ୍କ ପାଇଁ 'ଅଲ୍ଲାହ୍' ଶବ୍ଦ ବ୍ୟବହାର ହୁଏ । ତେଣୁ ସ୍ରଷ୍ଟାଙ୍କୁ ଅନ୍ୟ ଭାଷାରେ ବା ଅନ୍ୟ ନାମରେ ଡକାଯିବାରେ କିଛି ଭୁଲ ନାହିଁ । ଯିଏ ମୂକ, ସେ ତ ପୁଣି ମନେ ମନେ ତାଙ୍କୁ ଡାକେ ? କିନ୍ତୁ ନାମଟି ପରମେଶ୍ୱରଙ୍କର ଯୋଗ୍ୟ ହେବା ଉଚିତ ।

ଆରବୀ ଭାଷାରେ 'ଅଲ୍ଲାହ୍' ପରମେଶ୍ୱରଙ୍କର ବ୍ୟକ୍ତିଗତ ନାମ । ଯଦି 'ଅଲ୍ଲାହ୍' ଶବ୍ଦର ଓଡ଼ିଆ ଅନୁବାଦ କରାଯାଏ, ଏହା ହେବ 'କେବଳ ମାତ୍ର ଉପାସ୍ୟ' । ଏହି ନାମଟିର ଅନେକ ବିଶେଷତ୍ୱ ରହିଛି ।

ଯେପରି ଇଂରାଜୀ ଭାଷାରେ 'The' ଶବ୍ଦଟି ନିର୍ଦ୍ଦିଷ୍ଟତାକୁ ବୁଝାଏ, ସେହିପରି ଆରବୀ ଭାଷାରେ 'ଅଲ୍' ଶବ୍ଦଟି ନିର୍ଦ୍ଦିଷ୍ଟତାକୁ ବୁଝାଏ । 'House' ଅର୍ଥ ଘର । କିନ୍ତୁ 'The House' କହିଲେ ଏକ ନିର୍ଦ୍ଦିଷ୍ଟ ଘରକୁ ହିଁ ବୁଝାଏ । ସେହିପରି ଆରବୀରେ 'ଇଲାହ୍' ଅର୍ଥ ଉପାସ୍ୟ, 'ଇଲାହ୍' ପୂର୍ବରୁ 'ଅଲ୍' ସଂଯୋଗ କଲେ 'ଅଲ+ଇଲାହ୍' ବା 'ଅଲ୍ଲାହ୍' ହେବ, ଯାହାର ଅର୍ଥ ଏକ ନିର୍ଦ୍ଦିଷ୍ଟ ଉପାସ୍ୟ ।

ଏହି ଶବ୍ଦଟିର ଏକ ବିଶେଷତ୍ୱ ହେଉଛି ଯେ, ଏହାର ପୂର୍ବେ କିମ୍ବା ପରେ କୌଣସି ଅକ୍ଷର ସଂଯୋଗ କରି ଏହାକୁ ବଦଳା ଯାଇପାରିବ ନାହିଁ ।

ଉଦାହରଣ ସ୍ୱରୂପ, God ଶବ୍ଦରେ 's' ଯୋଗ କରି Gods କରାଯାଇପାରେ, 'ess' ଯୋଗ କରି 'Goddess' କରାଯାଇପାରେ । 'ଈଶ୍ୱର' ଶବ୍ଦରୁ ନାଗେଶ୍ୱର, 'ଭଗବାନ'ରୁ ଭଗବତୀ, ଠାକୁରରୁ ଠାକୁରାଣୀ ମଧ୍ୟ

କରାଯାଏ । ଏହିପରି ଅନ୍ୟମାନଙ୍କୁ ଈଶ୍ୱର କରାଯାଇଛି ଏବଂ ଲୋକେ ତାଙ୍କର ଉପାସନା ମଧ୍ୟ କରିଛନ୍ତି ! କିନ୍ତୁ 'ଅଲ୍ଲାହ୍' ଶବ୍ଦଟିର ଲିଙ୍ଗ ଏବଂ ବଚନ ପରିବର୍ତ୍ତନଶୀଳ ନୁହେଁ । ଏହା ଏକ ଅନୁପମ ନାମ, ଯାହାକୁ ବିକୃତ କରାଯିବା ସମ୍ଭବ ନୁହେଁ । ଏହି କାରଣ ଯୋଗୁଁ କୁର୍‌ଆନରେ ଈଶ୍ୱରଙ୍କ ପାଇଁ ଅଧିକାଂଶ ସ୍ଥାନରେ 'ଅଲ୍ଲାହ୍' ଶବ୍ଦ ପ୍ରୟୋଗ ହୋଇଛି । ଏହି ପୁସ୍ତକରେ ଯେଉଁଠି ଈଶ୍ୱର ବା ପରମେଶ୍ୱର ଶବ୍ଦ ବ୍ୟବହାର ହୋଇଛି, ତାହା ପାଠକ ପାଠିକାମାନଙ୍କର ବୁଝିବା ନିମନ୍ତେ ବ୍ୟବହୃତ ହୋଇଛି, ଅନ୍ୟଥା 'ଅଲ୍ଲାହ୍' ଶବ୍ଦଟି ଅନୁପମ । 'ଖୁଦା' ମଧ୍ୟ 'ଅଲ୍ଲାହ୍' ଶବ୍ଦର ସଠିକ୍ ଅନୁବାଦ ନୁହେଁ । ପୃଥିବୀର କୌଣସି ଭାଷାରେ ଏପରି ଏକ ଶବ୍ଦ ନାହିଁ ଯାହା ଏହାର ସମ୍ପୂର୍ଣ୍ଣ ଅର୍ଥକୁ ପ୍ରକାଶ କରିପାରିବ । ଲିଙ୍ଗ ଏବଂ ବଚନର ଅପରିବର୍ତ୍ତନୀୟତାର ଗୁଣ ସହିତ ଈଶ୍ୱରଙ୍କର ସମସ୍ତ ବୈଶିଷ୍ଟ୍ୟଗୁଡ଼ିକୁ ଏକକାଳୀନ ଧାରଣ କରିଥିବା ଏହି ସୁନ୍ଦର ନାମଟିର କୌଣସି ବିକଳ୍ପ ନାହିଁ ।

ଅଲ୍ଲୋପନିଷଦରେ ଈଶ୍ୱରଙ୍କୁ 'ଅଲ୍ଲାହ୍' ନାମରେ ସମ୍ବୋଧିତ କରି ଲେଖାଯାଇଛି :

> "ଅଲ୍ଲାହ୍ ଅନାଦି ଏବଂ ଅଲ୍ଲାହ୍ ଅନନ୍ତ ଏବଂ ଅଲ୍ଲାହ୍ ହିଁ ବାସ୍ତବରେ ସକଳ ଜଗତର ପାଳନକର୍ତ୍ତା । ଅଲ୍ଲାହ୍‌ଙ୍କ ପାଇଁ ହିଁ ସମସ୍ତ ପବିତ୍ର କର୍ମ, ଅଲ୍ଲାହ୍ ହିଁ ସୂର୍ଯ୍ୟ, ଚନ୍ଦ୍ର ଏବଂ ତାରା ସୃଷ୍ଟି କଲେ । ଅଲ୍ଲାହ୍ ହିଁ ସମସ୍ତ ଋଷିଙ୍କୁ ପ୍ରେରଣ କଲେ ଏବଂ ସୂର୍ଯ୍ୟ, ଚନ୍ଦ୍ର ଓ ତାରା ରଚନା କଲେ । ଅଲ୍ଲାହ୍ ସବୁ ଋଷିମାନଙ୍କୁ ପ୍ରେରଣ କଲେ ଏବଂ ଆକାଶ ରଚନା କଲେ । ଅଲ୍ଲାହ୍ ଧରିତ୍ରୀ ଆକାଶର ପ୍ରକାଶକ ।"

ଅଲ୍ଲୋପନିଷଦ



# ଇସ୍‌ଲାମର ଅନିବାର୍ଯ୍ୟ ଉପାସନା

ପୂର୍ବାଲୋଚିତ ବିଭିନ୍ନ ଧରଣର ଉପାସନାଗୁଡ଼ିକ ମଧ୍ୟରୁ ନିମ୍ନଲିଖିତ ଉପାସନାଗୁଡ଼ିକ ଇସ୍‌ଲାମରେ ଅନିବାର୍ଯ୍ୟ କରାଯାଇଛି :

♦ **ନମାଜ**

ପ୍ରଥମଟି ହେଲା ଯୋଗ-ଉପାସନା ଯାହାକୁ ନମାଜ କୁହାଯାଏ । ଏହା ଏକ ବିଶେଷ ଧରଣର ଉପାସନା । ନିଜ ଇଚ୍ଛା ଅନୁଯାୟୀ ନୁହେଁ, ବରଂ ଦୈନିକ ପାଞ୍ଚଥର ନିର୍ଦ୍ଧାରିତ ସମୟ ଓ ନିୟମ ଅନୁଯାୟୀ ଏହା କରିବା ଅନିବାର୍ଯ୍ୟ । କୁର୍‌ଆନ ଆଦେଶ ଦିଏ :

> ''ଅବଶ୍ୟ ବିଶ୍ୱାସକାରୀମାନଙ୍କ ପାଇଁ ନିର୍ଦ୍ଧାରିତ ସମୟାନୁଯାୟୀ ନମାଜ ପାଠ ଅନିବାର୍ଯ୍ୟ କରାଯାଇଛି ।''
>
> କୁର୍‌ଆନ ୪ : ୧୦୩

ନମାଜ ପରମେଶ୍ୱରଙ୍କ ଦରବାରରେ ଭକ୍ତର ଦୈନିକ ଉପସ୍ଥାନ । ଯେଉଁ ଭକ୍ତ ନିୟମିତ ଈଶ୍ୱରଙ୍କ ସେବାରେ ଉପସ୍ଥିତ ହୁଏ, ସେ ଜଣେ ଆଜ୍ଞାବହ ସେବକ ହେବାର ପ୍ରମାଣ ଦିଏ । ତା'ଠିଠାରୁ ଆଶା କରାଯାଏ ଯେ, ସେ ଈଶ୍ୱରଙ୍କ ଅନ୍ୟ ଆଦେଶଗୁଡ଼ିକୁ ମଧ୍ୟ ପାଳନ କରିବ । ଅନ୍ୟ ପକ୍ଷରେ ଯେଉଁ ବ୍ୟକ୍ତି ନିଜ ପ୍ରଭୁଙ୍କର ପ୍ରଥମ ଆଦେଶଟି ପାଳନ କରିବା ପାଇଁ ଅସମର୍ଥ ଏବଂ ଯିଏ ଉପସ୍ଥାନ ଦେବାର କଷ୍ଟ ସ୍ୱୀକାର କରିବାକୁ ମଧ୍ୟ ପ୍ରସ୍ତୁତ ନୁହେଁ, ତା'ଠାରୁ ଅନ୍ୟ ଆଜ୍ଞାଗୁଡ଼ିକର ପାଳନ ଆଶା କରିବା ବୃଥା । ଏଥିପାଇଁ 'ନମାଜ'କୁ ସତ୍‌କର୍ମର ପ୍ରବେଶ ଦ୍ୱାର କୁହାଯାଏ ।

ଏହି ବିଶେଷ ଉପାସନାଟି ଅନେକ ପୂଜା-ଅର୍ଚ୍ଚନାର ଏକ ସୁନ୍ଦର ସମାହାର । ଏଥିରେ ପରମେଶ୍ୱରଙ୍କର ସ୍ତୁତି ବା ବନ୍ଦନା ଅଛି, ଜପ ଓ ପ୍ରାର୍ଥନା ଅଛି, ଧ୍ୟାନ ଓ ଚିନ୍ତନ ଅଛି, ବିଭିନ୍ନ ଆସନ ସହ ସାଷ୍ଟାଙ୍ଗ ପ୍ରଣାମ ମଧ୍ୟ ରହିଛି ।

ନମାଜ ମାଧ୍ୟମରେ ଭକ୍ତ ନିଜ କୁକର୍ମ ପାଇଁ ପଶ୍ଚାତ୍ତାପ କରି କ୍ଷମାପ୍ରାର୍ଥନା କରେ ଏବଂ ସତ୍‌ମାର୍ଗ ଦର୍ଶନ ପାଇଁ ପ୍ରଭୁଙ୍କର ସହାୟତା ଲୋଡ଼େ । ଏଥିରେ ପବିତ୍ର କୁର୍‌ଆନ ପାଠ କରାଯାଏ । କୁର୍‌ଆନ ସ୍ୱୟଂ ପରମେଶ୍ୱର ଅଲ୍ଲାହ୍‌ଙ୍କର ବାଣୀ । କୁର୍‌ଆନ ପାଠ ଦ୍ୱାରା ଈଶ୍ୱରଙ୍କର ମୌଳିକ ଆଦେଶଗୁଡ଼ିକ ଭକ୍ତ ପାଖରେ ନିୟମିତ ପହଞ୍ଚେ । ସେ ଦୈନିକ ନମାଜରେ ପରମେଶ୍ୱରଙ୍କ ବାଣୀ ପାଠ କରେ, ଯାହା ତାକୁ ଏକ ଧର୍ମନିଷ୍ଠ ଜୀବନ ନିର୍ବାହ କରିବାର ପ୍ରେରଣା ଦେଉଥାଏ । ଏହି ନିରନ୍ତର ଉପାସନା ପ୍ରକ୍ରିୟା ମନୁଷ୍ୟର ମୃତ୍ୟୁ ପର୍ଯ୍ୟନ୍ତ ଚାଲିଥାଏ ।

ନମାଜ ଈଶ୍ୱରଙ୍କ ସହ ମନୁଷ୍ୟର ଏକ ସ୍ଥାୟୀ ସମ୍ପର୍କ ସ୍ଥାପନ କରେ ଏବଂ ବ୍ୟସ୍ତବହୁଳ ଜୀବନରେ ମଧ୍ୟ ତାଙ୍କୁ ଭୁଲିଯିବାର ଅବକାଶ ଦିଏ ନାହିଁ । ଭକ୍ତ ଯେଉଁଠି ଥାଉନା କାହିଁକି, ନମାଜର ସମୟ ତାକୁ ଈଶ୍ୱରଙ୍କ କଥା ମନେ ପକାଇ ଦିଏ । ସେ ଘରେ ଥାଉ ବା ନିଜ କର୍ମକ୍ଷେତ୍ରରେ, ପ୍ରାର୍ଥନା ସମୟ ହୋଇଗଲେ ସେ ବ୍ୟସ୍ତ ହୋଇପଡ଼େ ।

ସ୍ରଷ୍ଟାଙ୍କ ସହ ନିବିଡ଼ ସମ୍ପର୍କ ରକ୍ଷା କରିବାର ଏପରି ଦୈନିକ ପାଞ୍ଚଥର ଅପରିହାର୍ଯ୍ୟ ଉପାସନା ଇସ୍‌ଲାମର ଏକ ବୈଶିଷ୍ଟ୍ୟ । ଯେଉଁମାନେ ମନଧ୍ୟାନ ଦେଇ ନିୟମିତ ନମାଜ କରନ୍ତି, ସେମାନଙ୍କ ପ୍ରତି ଅପାର କରୁଣା ବର୍ଷା ହୁଏ ଏବଂ ସେମାନଙ୍କ ମନକୁ ଅଲୌକିକ ଆନନ୍ଦ ମିଳେ । ଏହାଛଡ଼ା ଏହି ଉପାସନାଟି ମନୁଷ୍ୟ ଅନ୍ତରରେ ଈଶ୍ୱର ପ୍ରେମ ଓ ଈଶ୍ୱରଭୀତି ସୃଷ୍ଟି କରେ ଏବଂ ତାକୁ ତା' କର୍ମର ପରିଣାମ ବିଷୟରେ ବାରମ୍ବାର ସଚେତ କରାଉଥାଏ । ଏହା ତାକୁ ସ୍ମରଣ କରାଉଥାଏ ଯେ, ସର୍ବଜ୍ଞ ଓ ସର୍ବଦ୍ରଷ୍ଟା ଈଶ୍ୱର ତାର କର୍ମ ସବୁ ଦେଖୁଛନ୍ତି ଏବଂ ସେ ତାଙ୍କ ନିକଟରେ ନିଜର ପ୍ରତ୍ୟେକ କର୍ମ ପାଇଁ ଉତ୍ତରଦାୟୀ । ଯେଉଁମାନେ ନମାଜ ଛାଡ଼ିଦିଅନ୍ତି, ସେମାନଙ୍କ ସହ ଅଲ୍ଲାହ୍‌ଙ୍କ ସମ୍ପର୍କ ଛିନ୍ନ ହୋଇଯାଏ ।

ନମାଜ ସତ୍‌କର୍ମ ପାଇଁ ପ୍ରେରଣା ଦେବା ସହ ଅଶ୍ଳୀଳତା ଓ ଅପକର୍ମରୁ ନିବୃତ୍ତ ରହିବା ପାଇଁ ଶକ୍ତି ପ୍ରଦାନ କରେ । ପବିତ୍ର କୁର୍‌ଆନ କହେ :

> "ଏହି ଗ୍ରନ୍ଥରେ ଯାହା କିଛି (ଦିବ୍ୟବାଣୀ) ତୁମ୍ଭ ପ୍ରତି ପ୍ରେରିତ କରାଯାଇଛି, ତାକୁ ପାଠ କରୁଥାଅ ଏବଂ (ନିୟମ ଅନୁଯାୟୀ) ନମାଜ ସ୍ଥାପନା କର । ଅବଶ୍ୟ ନମାଜ ଅଶ୍ଳୀଳତା ଓ ଅପକର୍ମରୁ

ନିବୃତ୍ତ ରଖେ ଏବଂ ଅଲ୍ଲାହ୍‌ଙ୍କ ସ୍ମରଣ ସର୍ବୋତ୍କୃଷ୍ଟ କାର୍ଯ୍ୟ ଏବଂ ଅଲ୍ଲାହ୍ ତୁମ୍ଭମାନଙ୍କର କର୍ମ ସବୁ ଜାଣନ୍ତି ।''

କୁର୍‌ଆନ - ୨୯ : ୪୫

ସଂକ୍ଷେପରେ କହିବାକୁ ଗଲେ, ମନୁଷ୍ୟର ଚରିତ୍ରଗଠନ କରିବାରେ ଏବଂ ତାକୁ ଏକ ଆଜ୍ଞାକାରୀ ତଥା ଧର୍ମନିଷ୍ଠ ବ୍ୟକ୍ତି ରୂପେ ଗଢ଼ି ତୋଳିବାରେ ନମାଜ ମୁଖ୍ୟ ଭୂମିକା ଗ୍ରହଣ କରେ ।

ଜଣେ ମୁସଲମାନ୍‌ର ସର୍ବପ୍ରଧାନ ଓ ସର୍ବପ୍ରଥମ କର୍ତ୍ତବ୍ୟ ହେଉଛି– ସମୟରେ ନମାଜ ପାଠ କରିବା । ଈଶ୍ୱରଙ୍କର ପ୍ରିୟକର୍ମଗୁଡ଼ିକ ମଧ୍ୟରେ ନମାଜ ସର୍ବୋତ୍କୃଷ୍ଟ । ମହାମାନ୍ୟ ମୁହମ୍ମଦଙ୍କୁ ପ୍ରଶ୍ନ କରାଗଲା ଯେ, 'କେଉଁ କର୍ମଟି ଅଲ୍ଲାହ୍‌ଙ୍କର ସର୍ବପ୍ରିୟ ?' ସେ ଉତ୍ତର ଦେଲେ–

''ସମୟ ହେବା କ୍ଷଣି ନମାଜ ପାଠ କରିବା ।''

ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ୍ ୧

ପ୍ରତ୍ୟେକ ଯୁଗରେ ମାନବ ସମାଜକୁ ଏହି ବଶେଷ ଧରଣର ଉପାସନାଟି କରିବା ପାଇଁ ଆଦେଶ ଦିଆଯାଇଛି । ଧର୍ମଦୂତ ମହାମାନ୍ୟ ମୁସାଙ୍କୁ ମଧ୍ୟ ନମାଜର ଆଦେଶ ଦିଆଯାଇଥିଲା । ପବିତ୍ର କୁର୍‌ଆନରେ ବର୍ଣ୍ଣନା କରାଯାଇଛି ଯେ, ଯେତେବେଳେ ଧର୍ମଦୂତ ମୁସା (Moses) ସପତ୍ନୀକ ମଦୟନ୍‌ରୁ ଫେରୁଥିଲେ ଏବଂ ଜଙ୍ଗଲ ମଧ୍ୟରେ ଏକ ଜ୍ୟୋତି ତାଙ୍କର ଦୃଷ୍ଟିଗୋଚର ହୋଇଥିଲା, ସେଠାରେ ତାଙ୍କୁ ନିମ୍ନ ଦିବ୍ୟବାଣୀ କରାଯାଇଥିଲା–

''ଆମ୍ଭେ ହିଁ ଅଲ୍ଲହା; ଆମ୍ଭ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ । ସୁତରାଂ ତୁମ୍ଭେ ଆମ୍ଭର ହିଁ ଉପାସନା କର ଏବଂ ଆମ୍ଭର ସ୍ମରଣ ସକାଶେ ନମାଜ ସ୍ଥାପନା କର । ''

କୁର୍‌ଆନ ୨୦:୧୪

ପ୍ରାଚୀନ ଧର୍ମଗ୍ରନ୍ଥ ବେଦରେ ମଧ୍ୟ ନମାଜର ଆଦେଶ ଦିଆଯାଇଥିବାର ପ୍ରମାଣ ମଳେ । ବିଭିନ୍ନ ଆସନ ସହ କରାଯାଉଥିବା ଏହି ବିଶିଷ୍ଟ ଉପାସନାଟିର ନାମ 'ଯୋଗାଭ୍ୟାସ' ବୋଲି ବେଦରେ ଉଲ୍ଲେଖ ଅଛି । ସ୍ୱରୂପ କିଛିଟା ଭିନ୍ନ ଥାଇପାରେ, କିନ୍ତୁ ସମାନ ଉଦ୍ଦେଶ୍ୟରେ ଯେ ଯୋଗ ଉପାସନାର ଆଦେଶ

ଦିଆଯାଇଥିଲା ଏଥିରେ ସନ୍ଦେହ ନାହିଁ । ଆସନ୍ତୁ ବେଦର କେତୋଟି ଶ୍ଳୋକ ଦେଖିବା ।

''ପରମେଶ୍ୱରଙ୍କଠାରୁ ଉତ୍ତମ, ବଡ଼ ଐଶ୍ୱର୍ଯ୍ୟଯୁକ୍ତ, ସର୍ବଶକ୍ତିମାନ୍ ପଦାର୍ଥ କିଛି ନାହିଁ ! ତାହାଙ୍କ ସମ କେହି ମଧ ନାହାନ୍ତି । ଯେ ସମସ୍ତଙ୍କର ଆତ୍ମା, ସମସ୍ତଙ୍କର ସୃଷ୍ଟିକର୍ତ୍ତା, ସମସ୍ତ ଐଶ୍ୱର୍ଯ୍ୟର ଦାତା ଈଶ୍ୱର ଅଟନ୍ତି, ତାଙ୍କର ଭକ୍ତି ବିଶେଷ ଏବଂ ନିଜର ପୁରୁଷାର୍ଥ ଦ୍ୱାରା ଏହି ଲୋକରେ ଆମ୍ଭେମାନେ ଐଶ୍ୱର୍ଯ୍ୟ ପ୍ରାପ୍ତ ହେଉ ଏବଂ ଯୋଗାଭ୍ୟାସର ସେବନ ଦ୍ୱାରା ପରଲୋକର ସାମର୍ଥ୍ୟକୁ ପ୍ରାପ୍ତ ହେଉ ।''

ଯଜୁର୍ବେଦ, ଅଧ୍ୟାୟ-୨୩, ମନ୍ତ୍ର-୬୫

''ହେ ମନୁଷ୍ୟଗଣ ! ଯାହାଙ୍କଠାରୁ ବଡ଼ ଦୟାବାନ୍ ନ୍ୟାୟକାରୀ ଏବଂ ଅତ୍ୟନ୍ତ ସୂକ୍ଷ୍ମ କୌଣସି ପଦାର୍ଥ ମଧ ନାହିଁ ବା ଯେ ବେଦ ପ୍ରକଟ କରିବା ଦ୍ୱାରା ସବୁ ମନୁଷ୍ୟଙ୍କୁ ସୁଶୋଭିତ କରିଛନ୍ତି ବା ଯେ ଅଦ୍ଭୁତ ଜ୍ଞାନ ଏବଂ ଧନ ଜଗତରେ ବିସ୍ତୃତ କରିଛନ୍ତି ଏବଂ ଯେ ଯୋଗାଭ୍ୟାସ ଦ୍ୱରା ପ୍ରାପ୍ତ ହେବା ଯୋଗ୍ୟ ଅଟନ୍ତି, ସେହି ଈଶ୍ୱର ଆମ୍ଭ ସମସ୍ତ ଲୋକଙ୍କର ଉପାସ୍ୟ ଅଟନ୍ତି–ଏହା ତୁମ୍ଭେମାନେ ବୁଝ ।''

ଯଜୁର୍ବେଦ, ଅଧ୍ୟାୟ-୨୬, ମନ୍ତ୍ର-୩

''ହେ ମନୁଷ୍ୟଗଣ ! ତୁମ୍ଭେମାନେ ଯେ ସମସ୍ତଙ୍କର ଦ୍ରଷ୍ଟା, ଧର୍ତ୍ତା, କର୍ତ୍ତା, ଅଦ୍ୱିତୀୟ ଅଧିଷ୍ଠାତା ପରମାତ୍ମାଙ୍କୁ ଜାଣିବା ପାଇଁ ନିତ୍ୟ ଯୋଗାଭ୍ୟାସ କର, ତଦ୍ୱାରା ସେ ଆନନ୍ଦିତ ହୁଅନ୍ତି ।''

ଯଜୁର୍ବେଦ, ଅଧ୍ୟାୟ-୨୭, ମନ୍ତ୍ର-୨୬

''ବିଦ୍ୱାନ ମନୁଷ୍ୟମାନେ ସୃଷ୍ଟିକର୍ତ୍ତା ଈଶ୍ୱରଙ୍କୁ ଯୋଗାଭ୍ୟାସ ଦ୍ୱାରା ସଦା ହୃଦୟ ରୂପକ ଆକାଶରେ ଧ୍ୟାନ ଏବଂ ପୂଜନ କରିବା ଉଚିତ ।''

ଯଜୁର୍ବେଦ, ଅଧ୍ୟାୟ-୩୧, ମନ୍ତ୍ର-୯

ଏଥିରୁ ଜଣାଯାଏ ଯେ, ଯୋଗାଭ୍ୟାସ କେବଳ ଏକ ଶାରୀରିକ ବ୍ୟାୟାମ ନୁହେଁ, ବରଂ ନମାଜ ଭଳି ଏକ ଉପାସନା ।

ବ୍ରହ୍ମ ମୁହୂର୍ତ୍ତରେ ଈଶ୍ୱରଙ୍କର ଧ୍ୟାନ-ଚିନ୍ତନ ବା ଗ୍ରନ୍ଥ ପଠନକୁ ସବୁ ଯୁଗରେ ଏକ ସତ୍‌କର୍ମ ରୂପେ ବିବେଚନା କରାଯାଇଛି । ରାତ୍ରିର ତୃତୀୟ ବା ଚତୁର୍ଥ ପ୍ରହରରେ ଶଯ୍ୟା ତ୍ୟାଗ କରି ଈଶ୍ୱରଙ୍କର ପ୍ରାର୍ଥନା ଓ ଉପାସନା କରିବା ଈଶ୍ୱରଙ୍କ ନିକଟରେ ଏକ ପ୍ରଶଂସନୀୟ କର୍ମ । ଏହି ପ୍ରାର୍ଥନାକୁ ଇସ୍‌ଲାମରେ 'ତହଜ୍ଜୁଦ୍' କୁହାଯାଏ । କେବଳ ଅତି ନିଷ୍ଠାବାନ ଭକ୍ତମାନେ ହିଁ ଏହା କରନ୍ତି ।

ପ୍ରାଚୀନ ବୈଦିକ ଶିକ୍ଷାରେ ମଧ୍ୟ ଏହି ଉପାସନାର ଉଲ୍ଲେଖ ରହିଛି । ସୁତରାଂ ଋଗ୍‌ବେଦ କହୁଛି—

> ''ଯେଉଁ ଲୋକ ରାତ୍ରିରେ ଚତୁର୍ଥ ପ୍ରହରରେ ଶଯ୍ୟା ତ୍ୟାଗ କରି ଜାଗ୍ରତ ହୋଇ ଈଶ୍ୱରଙ୍କର ସ୍ତୁତି-ପ୍ରାର୍ଥନା ଏବଂ ଉପାସନା କରି ଉତ୍ତମ ଗୁଣ ଏବଂ ଐଶ୍ୱର୍ଯ୍ୟ ମାଗନ୍ତି, ସେ ପୁରୁଷାର୍ଥ ଦ୍ୱାରା ଅବଶ୍ୟ ଏହାକୁ ପ୍ରାପ୍ତ ହୁଅନ୍ତି ।''
>
> **ଋଗ୍‌ବେଦ, ୩ୟ ମଣ୍ଡଳ, ସୂକ୍ତ-୬୧, ମନ୍ତ୍ର-୬**

ପ୍ରାୟ ସମାନ ଧରଣର ଅର୍ଦ୍ଧରାତ୍ରିର ଏକ ପ୍ରାର୍ଥନା ବିଷୟ ବାଇବେଲ୍‌ରେ ବର୍ଣ୍ଣନା କରାଯାଇଛି :

> ''ତୁମ୍ଭର ଧର୍ମମୟ ଶାସନ ସକାଶୁ ତୁମ୍ଭକୁ ଧନ୍ୟବାଦ ଦେବାପାଇଁ ମୁଁ ଅର୍ଦ୍ଧରାତ୍ରରେ ଉଠିବି । ଯେଉଁମାନେ ତୁମ୍ଭଙ୍କୁ ଭୟ କରନ୍ତି ଓ ତୁମ୍ଭ ବିଧାନସବୁ ପାଳନ୍ତି, ମୁଁ ସେ ସମସ୍ତଙ୍କର ସଙ୍ଗୀ ।''
>
> **ବାଇବଲ୍, ଗୀତା ସଂହିତା, ୧୧୯ : ୬୨-୬୩**

## ♦ ରୋଜା

ଦ୍ୱିତୀୟ ଉପାସନାଟି ହେଲା ଉପବାସ, ଯାହାକୁ 'ରୋଜା' କୁହାଯାଏ । ବର୍ଷକୁ ଥରେ ଏକ ନିର୍ଦ୍ଦିଷ୍ଟ ମାସରେ ନିୟମ ଅନୁଯାୟୀ ଉପବାସ ପାଳନ କରିବା ଅନିବାର୍ଯ୍ୟ । ବିଶ୍ୱର ସମସ୍ତ ମୁସଲିମ୍ ଭକ୍ତ ରମଜାନ ମାସରେ ଉପବାସ ପାଳନ କରନ୍ତି । ଉପବାସ କାଳରେ ଭକ୍ତ ପରମେଶ୍ୱରଙ୍କ ଆଦେଶରେ ଖାଦ୍ୟ, ପାନୀୟ, ସହବାସ ଆଦି ଇପ୍‌ସିତ ଲାଳସାଗୁଡ଼ିକୁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ତ୍ୟାଗ

କରିଥାଏ ଏବଂ ମିଥ୍ୟା, କାମ, କ୍ରୋଧ, କପଟ, ଚୋରି, ଚୁଗୁଲି, ପରନିନ୍ଦା, ପର ଅମଙ୍ଗଳ ଆଦି ପାପ କର୍ମରୁ ନିବୃତ୍ତ ରହିଥାଏ । ଏହି ଉପବାସ କ୍ରମାଗତ ଭାବରେ ମାସେ କାଳ ଇନ୍ଦ୍ରିୟଗୁଡ଼ିକୁ ଈଶ୍ୱରଙ୍କ ଇଚ୍ଛା ଅନୁଯାୟୀ ନିୟନ୍ତ୍ରିତ କରେ ଏବଂ ବର୍ଷସାରା ସଂଯମତା ରକ୍ଷା କରିବାର ପ୍ରେରଣା ଦିଏ । ଏହାଛଡ଼ା ସମାଜର ଧନଶାଳୀ ବ୍ୟକ୍ତିମାନେ ଉପବାସ ମାଧ୍ୟମରେ ଦୀନ-ଦୁଃଖୀଙ୍କର କ୍ଷୁଧା ଜନିତ କଷ୍ଟ ମଧ୍ୟ ହୃଦୟଙ୍ଗମ କରିବାର ଅବକାଶ ପାଆନ୍ତି ।

ପ୍ରତ୍ୟେକ ଯୁଗରେ ଦିବ୍ୟଗ୍ରନ୍ଥଗୁଡ଼ିକ ଉପବାସ ପାଳନ କରିବାର ଆଦେଶ ଦେଇଛନ୍ତି । ବର୍ତ୍ତମାନ ମଧ୍ୟ ବିଭିନ୍ନ ଧର୍ମୀୟ ପରମ୍ପରାରେ ଉପବାସକୁ ଏକ ପୁଣ୍ୟକର୍ମ ରୂପେ ବିବେଚନା କରାଯାଏ । ପବିତ୍ର କୁର୍‌ଆନ କହେ :

> ''ହେ ବିଶ୍ୱାସକାରୀମାନେ ! ତୁମ ପାଇଁ ଉପବାସ ପାଳନ ସେହିପରି ଅପରିହାର୍ଯ୍ୟ କରିଦିଆଯାଇଛି, ଯେପରି ତୁମ ପୂର୍ବବର୍ତ୍ତୀ ଲୋକମାନଙ୍କ ପାଇଁ ଏହା ଅପରିହାର୍ଯ୍ୟ କରାଯାଇଥିଲା; ଯାହାଫଳରେ ତୁମେ ଧର୍ମପରାୟଣ ହେବ ।''
>
> କୁର୍‌ଆନ ୨ : ୧୮୩

### ♦ ଜକାତ୍

ତୃତୀୟ ଉପାସନାଟି ହେଲା 'ଜକାତ୍' ବା ଦାନ । ବର୍ଷକୁ ଥରେ ଗଚ୍ଛିତ ଧନର ଏକ ନିର୍ଦ୍ଦିଷ୍ଟ ଅଂଶ ଈଶ୍ୱରଙ୍କ ପ୍ରସନ୍ନତା ଉଦ୍ଦେଶ୍ୟରେ ଦାନ କରିଦେବା ଇସ୍‌ଲାମରେ ଅପରିହାର୍ଯ୍ୟ କରାଯାଇଛି । ଈଶ୍ୱର ଆଦେଶ ଦେଇଛନ୍ତି :

> ''ନମାଜ ପ୍ରତିଷ୍ଠା କର, ଜକାତ୍ ଦିଅ ଏବଂ ଯେଉଁମାନେ ମୋ ଆଗରେ ନତମସ୍ତକ ହୁଅନ୍ତି, ସେମାନଙ୍କ ସହ ତୁମେ ମଧ୍ୟ ନତମସ୍ତକ ହୋଇପଡ଼ ।''
>
> କୁର୍‌ଆନ ୨ : ୪୩

ଏହି ଉପାସନା ମାଧ୍ୟମରେ ସମାଜର ଆର୍ଥିକ ସ୍ୱଚ୍ଛଳ ବ୍ୟକ୍ତିମାନଙ୍କ ଗଚ୍ଛିତ ଧନର ଏକ ନିର୍ଦ୍ଦିଷ୍ଟ ଅଂଶ ସଂଗୃହିତ ହୋଇ ସାମଜର ଦୀନ-ଦୁଃଖୀମାନଙ୍କ ମଧ୍ୟରେ ବିତରଣ କରାଯାଏ । ସାମଜର ଆର୍ଥିକ ସନ୍ତୁଳନ ରକ୍ଷା କରିବା ପାଇଁ ଏହା ଏକ ଅତୁଳନୀୟ ସ୍ୱର୍ଗୀୟ ବ୍ୟବସ୍ଥା । ଏହି ବ୍ୟବସ୍ଥା ସମାଜର କୌଣସି ବ୍ୟକ୍ତିକୁ ଅନାହାରରେ ମରିଯିବା ପାଇଁ ଦିଏ ନାହିଁ । ଏହାଛଡ଼ା ଦୟା, ପ୍ରେମ ଏବଂ

ଭାତୃଭାବ ବୃଦ୍ଧିରେ ମଧ୍ୟ ଏହା ସହାୟକ ହୋଇଥାଏ । 'ଜକାତ୍'ର ଅର୍ଥ ଅନ୍ୟ କେତେକ କଲ୍ୟାଣ ମୂଳକ ସାମୂହିକ କାର୍ଯ୍ୟ ପାଇଁ ମଧ୍ୟ ବ୍ୟବହୃତ ହୁଏ ।

ସମସ୍ତ ଗ୍ରନ୍ଥଗୁଡ଼ିକ ଦାନ ପୁଣ୍ୟ କରିବାର ଶିକ୍ଷା ଦେଇଛନ୍ତି ଏବଂ ସଞ୍ଚିତ ଧନ, ଶସ୍ୟ ବା ପଶୁମାନଙ୍କର ଏକ ନିର୍ଦ୍ଦିଷ୍ଟ ଅଂଶ ଦାନ କରିବାର ଉପଦେଶ ଦେଇଛନ୍ତି, ଯଥା—ବେଦ ଅନାଦି ପଦାର୍ଥରୁ ଶ୍ରେଷ୍ଠତର ଅଂଶ ବାହାର କରିବାର ଆଦେଶ ଦେଇ କହୁଛି :

''ଯେପରି ଗାଇ ତୃଣ, ଘାସ ଆଦି ଖାଇ ଦୁଧ ଦିଏ, ସେହିପରି ଅନାଦି ପଦାର୍ଥରୁ ଶ୍ରେଷ୍ଠତର ଅଂଶ ବାହାର କରିବା ଉଚିତ । ଯେ ନିଜର ସଙ୍ଗୀମାନଙ୍କୁ ଅନାଦି ପଦାର୍ଥ ଦ୍ୱାରା ସତ୍କାର କରନ୍ତି ଏବଂ ପରସ୍ପର ଜଣେ ଅନ୍ୟ ଜଣଙ୍କର ଆନନ୍ଦ ଇଚ୍ଛା ସହିତ ପରମାତ୍ମାଙ୍କର ଆଶ୍ରୟ ନିଅନ୍ତି, ସେ ପ୍ରଶଂସିତ ହୁଅନ୍ତି ।''

ଋଗବେଦ, ପ୍ରଥମ ମଣ୍ଡଳ, ସୂକ୍ତ ୧୮୭, ମନ୍ତ୍ର-୧୧

କୁର୍‌ଆନ ମଧ୍ୟ ଏହି ଧରଣର ଆଦେଶ ଦେଇଛି :

''ଯେପର୍ଯ୍ୟନ୍ତ ତୁମେ ନିଜର ପ୍ରିୟବସ୍ତୁଗୁଡ଼ିକରୁ (ଅଲ୍ଲାହ୍‌ଙ୍କ ମାର୍ଗରେ) ଖର୍ଚ୍ଚ ନ କରିଛ, କଦାପି ପୁଣ୍ୟ ଅର୍ଜନ କରିପାରିବ ନାହିଁ ।''

କୁର୍‌ଆନ ୩ : ୯୨

ବାଇବଲରେ ଫଳ, ଶସ୍ୟ ଓ ପଶୁମାନଙ୍କର ଏକ ନିର୍ଦ୍ଦିଷ୍ଟ ଅଂଶ ଈଶ୍ୱରଙ୍କର ପ୍ରସନ୍ନତା ପାଇଁ ଦାନ କରିବାର ଆଦେଶ ରହିଛି :

''ପୁଣି ଭୂମିର ଶସ୍ୟ କି ବୃକ୍ଷର ଫଳ ହେଉ, ଭୂମିରୁ ଉତ୍ପନ୍ନ ସମସ୍ତ ଦ୍ରବ୍ୟର ଦଶମାଂସ ସଦା ପ୍ରଭୁଙ୍କର ହେବ, ତାହା ସଦାପ୍ରଭୁଙ୍କ ଉଦ୍ଦେଶ୍ୟରେ ପବିତ୍ର ।''

ବାଇବଲ, ଲେବୀୟ ପୁସ୍ତକ, ୨୭ : ୩୦

''ପୁଣି ଗୋମେଷାଦି ପଲର ଦଶମାଂସ ଅର୍ଥାତ୍ ପାଞ୍ଚଣ-ତଳ ଦେଇ ଗମନକାରୀ ସବୁ ପଶୁ ମଧ୍ୟରେ ପ୍ରତ୍ୟେକ ଦଶମ ପଶୁ ସଦାପ୍ରଭୁଙ୍କ ଉଦ୍ଦେଶ୍ୟରେ ପବିତ୍ର ହେବ ।''

ବାଇବଲ, ଲେବୀୟ ପୁସ୍ତକ, ୨୭: ୩୨

''ତୁମେ ପ୍ରତି ବର୍ଷ ଆପଣା କ୍ଷେତ୍ରରୁ ଉତ୍ପନ୍ନ ବୀଜର ଦଶମାଂସ ଅବଶ୍ୟ ପୃଥକ୍ କରିବ ।''

**ବାଇବଲ, ଦ୍ୱିତୀୟ ବିବରଣ, ୧୪ : ୨୨**

ସେହିପରି ପବିତ୍ର କୁର୍‌ଆନରେ ମଧ୍ୟ ଏହାର ଆଦେଶ ଦିଆଯାଇଛି; କିନ୍ତୁ କୁର୍‌ଆନ ଏହାକୁ ବାଧ୍ୟତାମୂଳକ ଉପାସନା କରିଛି । ପ୍ରତ୍ୟେକ ମୁସଲମାନ ପାଇଁ ସାଢ଼େ ସାତ ଭରି (୮୭.୪୮ ଗ୍ରାମ୍) ସୁନା ବା ସାଢ଼େ ବାଉନ ତୋଳା (୬୧୨.୩୬ ଗ୍ରାମ୍) ରୂପା କିମ୍ବା ସମାନ ମୂଲ୍ୟର ଟଙ୍କା ଯଦି ବର୍ଷେ ରହିଯାଏ, ତେବେ ତାକୁ ତା' ଉପରେ ଶତକଡ଼ା ୨½ ଭାଗ ଜକାତ୍ ଅନିବାର୍ଯ୍ୟ ଭାବେ ଦେବାକୁ ହେବ । ସେହିପରି ପଶୁ ଏବଂ ଶସ୍ୟର ମଧ୍ୟ ଏକ ନିର୍ଦ୍ଦିଷ୍ଟ ଅଂଶ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ବାହାର କରିଦେବାକୁ ହେବ । ଏହା ଈଶ୍ୱରଙ୍କର ଅଧିକାର ।

### ♦ ହଜ୍

ଚତୁର୍ଥ ଉପାସନାଟି ହେଲା ତୀର୍ଥଯାତ୍ରା ବା ହଜ୍ । ମକ୍କା ଯାତ୍ରା ପାଇଁ ସମର୍ଥ ସମସ୍ତ ଅନୁଗାମୀମାନଙ୍କ ପାଇଁ ଜୀବନରେ ଅନ୍ତତଃ ଥରେ ତୀର୍ଥଯାତ୍ରା କରିବା ଅନିବାର୍ଯ୍ୟ । କୁର୍‌ଆନ କହେ :

''ବାସ୍ତବରେ ଯେଉଁ ଗୃହଟି ମନୁଷ୍ୟମାନଙ୍କ (ଉପାସନା) ପାଇଁ ସର୍ବପ୍ରଥମେ ନିର୍ମାଣ କରାଯାଇଥିଲା, ତାହା ମକ୍କାରେ ଅବସ୍ଥିତ । ଏହା ସମଗ୍ର ଜଗତ ପାଇଁ କଲ୍ୟାଣଦାୟକ ସ୍ଥାନ ଏବଂ ସତ୍‌ପଥର ଉତ୍ସ; ଯେଉଁଥିରେ ପ୍ରକାଶ୍ୟ ନିଦର୍ଶନମାନ ରହିଛି, ଇବ୍ରାହିମ୍‌ଙ୍କର ଆସ୍ଥାନ ରହିଛି ଏବଂ ଯେ କେହି ଏଥିରେ ପ୍ରବେଶ କରେ ସେ ସୁରକ୍ଷିତ ହୋଇଯାଏ; ଏବଂ ଯେଉଁମାନଙ୍କର ଏଠାକୁ ଆସିବାର ସାମର୍ଥ୍ୟ ଅଛି, ଅଲ୍ଲାହ୍ ସେମାନଙ୍କ ପାଇଁ ହଜ୍ ଅପରିହାର୍ଯ୍ୟ କରିଛନ୍ତି; ଏବଂ ଯେ କେହି ଅବିଶ୍ୱାସ କରେ, ତେବେ (ସେ ଜାଣିରଖିବା ଉଚିତ ଯେ) ଅଲ୍ଲାହ୍‌ଙ୍କୁ ଜଗତବାସୀଙ୍କର ସହାୟତାର ଆବଶ୍ୟକତା ନାହିଁ ।''

**କୁର୍‌ଆନ ୩ : ୯୬-୯୭**

ତୀର୍ଥ କାଳରେ ଭକ୍ତ ନିଜ ମହାମହିମ ଉପାସ୍ୟ ଅଲ୍ଲାହ୍‌ଙ୍କ ପୀଠ ଦର୍ଶନ କରିବାର ସୌଭାଗ୍ୟ ଲାଭ କରେ ଏବଂ ସେଠାରେ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ

ବିଭିନ୍ନ ଧରଣର ଉପାସନା କରି ତାଙ୍କର କୃପା ଲାଭ କରିଥାଏ । ହଜ୍ କାଳରେ ବିଶ୍ୱର ବିଭିନ୍ନ ଦେଶ, ଭିନ୍ନ ସମ୍ପ୍ରଦାୟ, ଭିନ୍ନ ରଙ୍ଗ ଓ ଭାଷାଭାଷୀ ଲୋକମାନେ ଏକତ୍ରିତ ହୁଅନ୍ତି । କଳା-ଗୋରା ଏବଂ ଧନୀ-ଗରୀବ ସମସ୍ତେ ବିଶେଷ ପ୍ରକାର ଧଳା ବସ୍ତ୍ର ପରିଧାନ କରି ସାମୂହିକ ଭାବରେ ଏକ ପରମେଶ୍ୱରଙ୍କ ମହିମା ଗାନ କରନ୍ତି ଏବଂ ଏକ ନିର୍ଦ୍ଦିଷ୍ଟ ନୀତିରେ ଉପାସନା କରନ୍ତି ଯାହାକୁ ଦେଖି ଅନ୍ତର ସ୍ୱୀକାର କରେ ଯେ, ସମଗ୍ର ବିଶ୍ୱ ପ୍ରକୃତରେ ଏକ ପରିବାର । ବାସ୍ତବରେ ହଜ୍ ବିଶ୍ୱ ଭ୍ରାତୃତ୍ୱଭାବର ଏକ ଆଦର୍ଶ ନମୁନା ପ୍ରଦର୍ଶନ କରେ ।

ଅଦ୍ୱୈତବାଦର ବିଶ୍ୱାସ ସହ ମହାମାନ୍ୟ ମୁହମ୍ମଦଙ୍କ ଧର୍ମଦୂତତ୍ୱର ସ୍ୱୀକାରୋକ୍ତି, ନମାଜ, ରୋଜା, ଜକାତ୍ ଏବଂ ହଜ୍—ଏହି ପାଞ୍ଚୋଟି ଇସ୍‌ଲାମର ସ୍ତମ୍ଭ, ଯାହା ଉପରେ ଧର୍ମର ଅଟ୍ଟାଳିକା ନିର୍ମାଣ ହୁଏ । ମହାମାନ୍ୟ ଧର୍ମଦୂତ କହିଛନ୍ତି :

> "ଇସ୍‌ଲାମ ପାଞ୍ଚୋଟି (ସ୍ତମ୍ଭ) ଉପରେ ଦଣ୍ଡାୟମାନ—ଏ କଥାର ସାକ୍ଷ୍ୟ ପ୍ରଦାନ କରିବା ଯେ, ଅଲ୍ଲାହ୍‌ଙ୍କ ବ୍ୟତୀତ କେହି ଉପାସ୍ୟ ନୁହେଁ ଏବଂ ମୁହମ୍ମଦ ଅଲ୍ଲାହ୍‌ଙ୍କର ବାର୍ତ୍ତାବହ, ନମାଜ ପ୍ରତିଷ୍ଠା କରିବା, ଜକାତ୍ ଦେବା, ହଜ୍ କରିବା ଏବଂ ରମଜାନ୍ ମାସରେ ଉପବାସ ପାଳନ କରିବା ।"

ସହୀ ବୁଖାରୀ, ୧ମ ଖଣ୍ଡ, ହଦିସ୍ ୭

ଏହା ବ୍ୟତୀତ ଧର୍ମରେ ଅନ୍ୟ କେତୋଟି ଉପାସନା ପାଇଁ ଆଦେଶ ଦିଆଯାଇଛି ଏବଂ ଆଉ କେତେଗୁଡ଼ିକୁ କରିବା ପାଇଁ ଉତ୍ସାହିତ କରାଯାଇଛି ।



# ଇସ୍‌ଲାମରେ ମାନବାଧିକାର

ଧର୍ମର ଦ୍ୱିତୀୟ ଭାଗଟି ହେଉଛି ପ୍ରାଣୀର ଅଧିକାର ବିଶେଷକରି ମାନବ ଅଧିକାର ଏବଂ ଏହାର ସୁରକ୍ଷା, ସମ୍ବନ୍ଧୀୟ ନୀତି-ନିୟମ, ଯାହାର ସିଦ୍ଧାନ୍ତଟି ହେଉଛି 'ମାନବ କଲ୍ୟାଣ' ଅର୍ଥାତ୍ ସମସ୍ତଙ୍କର ଉପକାର ହେଉ, କାହାରି ଅନିଷ୍ଟ ନ ହେଉ । ଇସ୍‌ଲାମ ଧର୍ମ-ବିଧାନର ପ୍ରାୟ ତିନି-ଚତୁର୍ଥାଂଶ ମାନବାଧିକାର ଏବଂ ଏହାର ସୁରକ୍ଷା ବିଷୟରେ ରହିଛି ।

ମାନବଜାତି ଗୋଟିଏ ପରିବାର । କୌଣସି ପରିବାରର ସ୍ୱାମୀ ଏହା ଚାହେଁ ନାହିଁ ଯେ ତା' ସନ୍ତାନମାନେ ଅକୃତଜ୍ଞ ଓ ଅବାଧ ହୁଅନ୍ତୁ । ସେମାନେ ଏତେ ନିର୍ଦ୍ଦୟ ହୋଇ ଯାଆନ୍ତୁ ଯେ ପରସ୍ପରକୁ ହତ୍ୟା କରନ୍ତୁ, ଲୁଣ୍ଠନ ଓ ଶୋଷଣ କରନ୍ତୁ କିମ୍ବା ପରସ୍ପରର ମାନମହତକୁ ଧୂଳିସାତ୍ କରି ଦିଅନ୍ତୁ । ସେ ଏହା ମଧ୍ୟ ସହ୍ୟ କରିପାରେ ନାହିଁ ଯେ, ତା'ର କେତୋଟି ସନ୍ତାନ ବିଳାସପୂର୍ଣ୍ଣ ଜୀବନ ଉପଭୋଗ କରନ୍ତୁ ଏବଂ ଅନ୍ୟମାନେ ଖଣ୍ଡେ ରୁଟି ବା ବସ୍ତ୍ର ପାଇଁ ବ୍ୟାକୁଳ ହୁଅନ୍ତୁ । ସେହିପରି ଜଗତର ସ୍ୱାମୀ ମଧ୍ୟ ମାନବଜଗତ ପାଇଁ ଏସବୁ ପସନ୍ଦ କରନ୍ତି ନାହିଁ । ତେଣୁ ପ୍ରତ୍ୟେକ ବ୍ୟକ୍ତିର ମୌଳିକ ଅଧିକାରଗୁଡ଼ିକର ସୁରକ୍ଷା ଓ ମାନବ-ସମାଜର ଶାନ୍ତି ଓ ପ୍ରଗତି ପାଇଁ ସେ ସ୍ପଷ୍ଟ ନୀତି ନିୟମ ନିର୍ଦ୍ଧାରଣ କରିଛନ୍ତି, ଯାହାର ପ୍ରଚାର ଓ ସ୍ଥାପନା ପାଇଁ ବିଭିନ୍ନ ଯୁଗରେ ମହାମାନ୍ୟ ଧର୍ମ ପ୍ରବର୍ତ୍ତକମାନେ ଅନେକ କଷ୍ଟ ସ୍ୱୀକାର କରିଛନ୍ତି ।

ଅନ୍ତିମ ଧର୍ମଦୂତ ମହାମାନ୍ୟ ମୁହମ୍ମଦ କହିଛନ୍ତି,

''ଯିଏ ଅନ୍ୟ ପ୍ରତି ଦୟା କରେ ନାହିଁ, ତା' ପ୍ରତି ମଧ୍ୟ ଦୟା କରାଯିବ ନାହିଁ ।''

ସହୀ ବୁଖାରୀ ୮ମ ଖଣ୍ଡ, ହଦିସ୍ ୪୨

ପରୋପକାରର ଗୁରୁତ୍ୱ ବର୍ଣ୍ଣନା କରି ମହାମାନ୍ୟ ଧର୍ମଦୂତ କହିଛନ୍ତି :

"ତୁମମାନଙ୍କ ମଧ୍ୟରୁ ଜଣେ ମୁସଲମାନ ହୋଇପାରିବ ନାହିଁ ଯଦି ସେ ଅନ୍ୟ ପାଇଁ ଠିକ୍ ତାହାହିଁ ପସନ୍ଦ ନ କରେ ଯାହା ସେ ନିଜ ପାଇଁ ପସନ୍ଦ କରେ ।"

ସହୀ ବୁଖାରୀ, ୧ମ ଖଣ୍ଡ, ହଦିସ୍ ୧୨

ଇସ୍‌ଲାମରେ କେବଳ ସେହି କର୍ମଗୁଡ଼ିକୁ କରିବାର ଆଦେଶ ଦିଆଯାଇଛି ଯାହାଦ୍ୱାରା ବ୍ୟକ୍ତି ଓ ସମାଜର କୌଣସି ହିତ ସାଧନ ହୁଏ । ସମାଜର ଧନ-ଜୀବନ, ମାନ-ସମ୍ମାନ ବା ଚରିତ୍ର ପ୍ରତି ହାନିକାରକ ସମସ୍ତ ଆଚରଣଗୁଡ଼ିକ ନିଷିଦ୍ଧ କରାଯାଇଛି । ଈଶ୍ୱରଙ୍କ ପ୍ରସନ୍ନତା ପାଇଁ ମାନବଜଗତର କଲ୍ୟାଣ ନିମିତ୍ତ କାର୍ଯ୍ୟ କରିବା ତଥା ନିଜର ଶକ୍ତି ଓ ସାମର୍ଥ୍ୟ ଅନୁସାରେ ସମସ୍ତଙ୍କର ଉପକାର କରିବା ପାଇଁ ଇସ୍‌ଲାମ ଶିକ୍ଷା ଦିଏ ।

ଯେହେତୁ ବ୍ୟକ୍ତି ପାଇଁ ନିଜ ପରିବାର ଓ ଆତ୍ମୀୟ ସ୍ୱଜନମାନଙ୍କର ଅବଦାନ ସର୍ବାଧିକ ଥାଏ, ଧର୍ମରେ ସେମାନଙ୍କର ଅଧିକାର ମଧ୍ୟ ସ୍ୱତନ୍ତ୍ର ରହିଛି । ଏମାନେ କେବଳ ସାଧାରଣ ମନୁଷ୍ୟ ନୁହନ୍ତି, ମନୁଷ୍ୟ ହେବା ସହିତ ବ୍ୟକ୍ତିର ନିକଟ ସମ୍ପର୍କୀୟ ମଧ୍ୟ । ଏହି ପରିପ୍ରେକ୍ଷୀରେ ମାନବସମାଜକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ତେଣୁ ପ୍ରଥମଟି ହେବ ଆତ୍ମୀୟସ୍ୱଜନଙ୍କର ଅଧିକାର ଏବଂ ଦ୍ୱିତୀୟଟି 'ମାନବଅଧିକାର' । ମାନବ ଅଧିକାର ସଂପର୍କରେ ଆଲୋଚନା କରିବା ପୂର୍ବରୁ ପ୍ରଥମେ ଆସନ୍ତୁ ସଂପର୍କୀୟମାନଙ୍କର ସ୍ୱତନ୍ତ୍ର ଅଧିକାରଗୁଡ଼ିକ ସଂପର୍କରେ ଆଲୋଚନା କରିବା ।

## ♦ ଆତ୍ମୀୟସ୍ୱଜନଙ୍କର ଅଧିକାର

ଧର୍ମ କହେ ଯେ ବ୍ୟକ୍ତିର ସ୍ନେହ- ଶ୍ରଦ୍ଧା, ଦୟା, ପ୍ରେମ ଓ ଧନ-ସଂପତ୍ତିରେ ଯାହାର ସର୍ବପ୍ରଥମ ଅଧିକାର ରହିଛି, ସେ ହେଲେ ତାର ପିତା ମାତା, ଅତ୍ମୀୟସ୍ୱ ଜନ ଏବଂ ବନ୍ଧୁପରିଜନ । ସେମାନଙ୍କ ସହ ବ୍ୟକ୍ତିର ପ୍ରକୃତିଦତ୍ତ ସମ୍ପର୍କ ଯୋଗୁଁ ସେମାନଙ୍କର ଅଧିକାର ଅଧିକ ଏବଂ ସେମାନଙ୍କ ପାଇଁ ବ୍ୟକ୍ତିର ଦାୟିତ୍ୱ ମଧ୍ୟ ସାଧାରଣ ଲୋକଙ୍କ ତୁଳନାରେ ଯଥେଷ୍ଟ ଅଧିକ ରହିଛି । ଯିଏ ଯେତେ ନିକଟତର, ତାର ଅଧିକାର ସେତିକି ଅଧିକ । ପବିତ୍ର କୁରଆନ ଆଦେଶ ଦିଏ :

''ଏବଂ ଅଲ୍ଲାହ୍‌ଙ୍କର ଉପାସନା କର ଏବଂ (ଉପାସନାରେ) ତାଙ୍କ ସହିତ କାହାରିକୁ ସହଭାଗୀ କର ନାହିଁ, ପିତା-ମାତା, ଅତ୍ମୀୟସ୍ୱ ଜନ, ଅନାଥ, ଦରିଦ୍ର, ନିକଟତମ ପଡ଼ୋଶୀ ଏବଂ ଦୂର ପଡ଼ୋଶୀ, ନିକଟତମ ବନ୍ଧୁ, ପଥଚାରୀ ଏବଂ ନିଜ ଆଶ୍ରିତ (ଦାସ-ଦାସୀ)ମାନଙ୍କ ସହିତ ଉତ୍ତମ ଆଚରଣ କର । ନିଃସନ୍ଦେହ ଅଲ୍ଲାହ୍ ଅହଂକାରୀ ଏବଂ ଆତ୍ମଗର୍ବୀମାନଙ୍କୁ ପସନ୍ଦ କରନ୍ତି ନାହିଁ ।''

କୁରଆନ ୪ : ୩୬

ଈଶ୍ୱରଙ୍କର ଅଧିକାର ପରେ ପରେ କୁର୍‌ଆନ ପିତା-ମାତାଙ୍କର ଅଧିକାର ବର୍ଣ୍ଣନା କରିଛି । ତେଣୁ ପିତା-ମାତା ହିଁ ସର୍ବାଧିକ ଆଦରଣୀୟ ଏବଂ ଭକ୍ତି ଓ ସମ୍ମାନର ଅଧିକାରୀ । ସମଗ୍ର ଜଗତରେ ମଣିଷର ଯିଏ ସର୍ବାଧିକ ନିକଟତର, ଯିଏ ତା' ଅସ୍ତିତ୍ୱର ମାଧ୍ୟମ ଏବଂ ଯିଏ ତା' ଲାଳନ-ପାଳନର ଭୂମିକା ତୁଲାଇ ଥାଆନ୍ତି, ସେମାନେ ହେଲେ ତାର ପିତା-ମାତା । ପୃଥିବୀର ଅନ୍ୟ କୌଣସି ବ୍ୟକ୍ତି ଏହି ଗୁରୁଦାୟିତ୍ୱ ତୁଲାଇ ନ ଥାଏ । ଜନ୍ମ ଦେବା ଏବଂ ଲାଳନ-ପାଳନ କରିବା ସମୟରେ ବାପା-ମାଆ ସନ୍ତାନ ପାଇଁ ଯେତେ ଦୁଃଖ କଷ୍ଟ ସହି ଥାଆନ୍ତି, ଦୁନିଆର ଅନ୍ୟ କେହି କାହାରି ପାଇଁ ଏପରି କରି ନଥାଏ । ସେମାନେ ସନ୍ତାନ ପାଇଁ ନିଜର ସମସ୍ତ ସୁଖ-ସ୍ୱାଚ୍ଛନ୍ଦକୁ ବଳି ପକାଇ ଦିଅନ୍ତି । ଅନ୍ୟ ସମସ୍ତଙ୍କର ସ୍ନେହ ପ୍ରେମରେ କିଛି-ନା-କିଛି ସ୍ୱାର୍ଥ ନିହିତ ଥାଏ, ଯାହା ପୂରଣ ନ ହେଲେ ସମ୍ପର୍କ ଛିନ୍ନ ହୋଇଯାଏ । କିନ୍ତୁ ପିତାମାତାଙ୍କର ସ୍ନେହ ସ୍ୱାର୍ଥରହିତ । ନିଜ ଜୀବନ ପଛେ ଚାଲିଯାଉ, ମୋ ସନ୍ତାନର ମଙ୍ଗଳ ହେଉ, ଏହି ହିଁ ତାଙ୍କର ପ୍ରତି ମୁହୂର୍ତ୍ତରେ କାମନା ।

ଆମେ ଅସୁସ୍ଥ ହେଲେ ସେମାନେ ରାତି ଉଜାଗର ରହନ୍ତି, ଆମେ ବାହାରେ ଥିଲେ ସେମାନେ ବାଟ ଚାହିଁ ବସନ୍ତି, ଆମେ ଖାଇ ନ ଥିଲେ ତାଙ୍କ ଭୋକ ମରିଯାଏ, ଆମ ଦୁଃଖ ଦେଖିଲେ ତାଙ୍କ ଓଠରୁ ହସ ଲିଭିଯାଏ, ଆମର ଟିକିଏ ଖୁସି ପାଇଁ ସେମାନେ ଅସଂଖ୍ୟ ଦୁଃଖ କଷ୍ଟ ଆଦରି ନିଅନ୍ତି । ଏମାନେ ଆମ ପିତା-ମାତା, ଯାହାଙ୍କ ଶରୀରର ଆମେ ଅଂଶବିଶେଷ । ଆମ ସ୍ନେହ-ସହାୟତା ଏବଂ ସେବା-ଯତ୍ନରେ ତାଙ୍କରି ହିଁ ସର୍ବପ୍ରଥମ ଅଧିକାର ରହିଛି । ଯାହାର ସେବା ଓ ତ୍ୟାଗ ସର୍ବାଧିକ ତା'ର ଅଧିକାର ମଧ୍ୟ ସର୍ବାଧିକ ହେବା ଉଚିତ ।

ସାଧାରଣ କପେ ଚା' ଦେଇଥିବା ବ୍ୟକ୍ତିଟିର 'କପେ ଚା' ପାଇବାର ଅଧିକାରକୁ ଆମେ ଅସ୍ୱୀକାର କରିପାରିବା ନାହିଁ । ପିତା-ମାତା ତ ଧନ-ମନ-ପ୍ରାଣ ଉତ୍ସର୍ଗ କରି ସନ୍ତାନର ପ୍ରତିପୋଷଣ କରନ୍ତି । ଏଣୁ ସେମାନଙ୍କ ଅଧିକାରର ପରିସର ଯେ କେତେ ବିଶାଳ ତାହା କଳନା କରି ହେବ ନାହିଁ । ଏହି କାରଣରୁ ଧର୍ମ ପୃଥିବୀର ସମସ୍ତ ବ୍ୟକ୍ତିଙ୍କ ଅପେକ୍ଷା ପିତାମାତାଙ୍କୁ ସର୍ବୋଚ୍ଚ ଆସନ ପ୍ରଦାନ କରିଛି ଏବଂ ତାଙ୍କ ସେବା କରିବା ତାଙ୍କୁ ପ୍ରସନ୍ନ ରଖିବାକୁ ବୈକୁଣ୍ଠ ପ୍ରାପ୍ତିର ମାଧ୍ୟମ ବୋଲି ବର୍ଣ୍ଣନା କରିଛି । ପବିତ୍ର କୁର୍‌ଆନ କହେ :

> ''ତୁମ ପାଳନକର୍ତ୍ତା ଅଟଳ ଆଦେଶ ଦେଇଛନ୍ତି ଯେ, ତାଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା କର ନାହିଁ ଏବଂ ପିତାମାତାଙ୍କ ସହ ସର୍ବୋତ୍ତମ ବ୍ୟବହାର କର । ଯଦି ଏମାନଙ୍କ ମଧ୍ୟରୁ ଜଣେ କେହି ବା ଉଭୟ ବୃଦ୍ଧାବସ୍ଥାରେ ଉପନୀତ ହୁଅନ୍ତି, ତେବେ ତାଙ୍କୁ 'ଓଃ' ମଧ୍ୟ କୁହନାହିଁ ଏବଂ ତାଙ୍କୁ କଟୁକଥା କୁହନାହିଁ ଏବଂ ତାଙ୍କ ସହିତ ମଧୁର ଆଳାପ କର । ନିଜକୁ ଛୋଟ ମନେକରି ବିନୟର ସହିତ ସେମାନଙ୍କର ସେବା କର ଏବଂ ତାଙ୍କ ପାଇଁ ପ୍ରାର୍ଥନା ମଧ୍ୟ କରୁଥାଅ ଯେ, ''ହେ ପାଳନକର୍ତ୍ତା ! ଆପଣ ସେମାନଙ୍କ ପ୍ରତି ଦୟା କରନ୍ତୁ ଯେପରି ସେମାନେ ମୋତେ ବାଲ୍ୟାବସ୍ଥାରୁ ସ୍ନେହ-ମମତା ଦେଇ ଲାଳନ-ପାଳନ କରିଅଛନ୍ତି ।''

କୁର୍‌ଆନ ୧୭ : ୨୩-୨୪

କିନ୍ତୁ ଦୁଃଖର କଥା, ଆଜିକାଲି ଅନେକ ପିତାମାତା ନିଜ ସନ୍ତାନ ଦ୍ୱାରାହିଁ ଅବହେଳିତ ହୁଅନ୍ତି । ଜୀବନର ଅପରାହ୍ଣରେ ନିଜ ରକ୍ତଠାରୁ ସ୍ନେହଯତ୍ନ ଟିକେ ନପାଇ ସେମାନେ ଘୋର ଦୁଃଖ ଭୋଗନ୍ତି । ବୁଢ଼ା ବୟସରେ ଯିଏ ତାଙ୍କର ଟିକିଏ ସାହା ହେବ ବୋଲି ସେମାନେ ଆଶା କରିଥାନ୍ତି, ସେଇ ଆଶାବାଡ଼ି ଖଣ୍ଡିକ ଭାଙ୍ଗିଯାଏ ।

ଅନେକ ଉଚ୍ଚଶିକ୍ଷିତ ବ୍ୟକ୍ତି ମଧ୍ୟ ପିତାମାତାଙ୍କର ଅବାଧ୍ୟ ହେବାର ଦେଖାଯାଏ । ବାପା ମାଆଙ୍କୁ କଟୁ କଥା କହିବା, ସେମାନଙ୍କ ସହ ଯୁକ୍ତିତର୍କ କରିବା ଏବଂ ସେମାନଙ୍କର ଉପଦେଶକୁ ଉପେକ୍ଷା କରିବା ଏହି ବାବୁମାନଙ୍କର ଅଭ୍ୟାସ । ବାପା ମାଆଙ୍କ ସେବାଯତ୍ନ କଲେ ଏମାନଙ୍କର ପ୍ରେଷ୍ଟିଜ୍ ହାମ୍ପର ହୁଏ । ସନ୍ତାନ ପାଇଁ ପଇସା ଖର୍ଚ୍ଚ କରିବା ଯେଉଁ ପିତାମାତାଙ୍କୁ ଆନନ୍ଦ ଦେଉଥିଲା,

ସେହିମାନଙ୍କୁ ଆଜି ସନ୍ତାନ ବୋଝ ମନେକରେ । ଏମାନେ ଭୁଲିଯାଆନ୍ତି ଯେ, ମାଆ ତାଙ୍କ ପାଇଁ କେତେ ଗର୍ଭଯନ୍ତ୍ରଣା ସହିଥିଲା ଏବଂ କେତେ କଷ୍ଟ ସହି ସେମାନଙ୍କର ଲାଳନ ପାଳନ କରିଥିଲା । ଏମାନେ ଭୁଲିଯାଆନ୍ତି ଯେ, ବାପା ସେମାନଙ୍କ ପାଇଁ କେତେ ଖର୍ଚ୍ଚ କରିଥିଲେ ଏବଂ କେତେ ଦୁଃଖ ସହି ସେମାନଙ୍କୁ ମଣିଷ କରିଥିଲେ । ଆଜି ସେହି ବାପାମା'ଙ୍କ ସେବାଯତ୍ନ ପାଇଁ ପୁଅମାନଙ୍କ ନିକଟରେ ସମୟ ନାହିଁ, ଦି'ପଦ ମିଠାକଥା କହିବାକୁ ଫୁରସତ୍ ନାହିଁ କିମ୍ବା ବାପାମା'ଙ୍କ ପାଇଁ ଖର୍ଚ୍ଚ କରିବାକୁ ସେମାନଙ୍କ ପକେଟ୍‌ରେ ପଇସା ନାହିଁ ।

ଆମେ ଜାଣିବା ଉଚିତ ଯେ ପିତାମାତାଙ୍କୁ ପୃଥିବୀରେ ଆସିଥିବା ସମସ୍ତ ଦିବ୍ୟଗ୍ରନ୍ଥ ଶ୍ରେଷ୍ଠ ଆସନ ପ୍ରଦାନ କରିଛନ୍ତି ଏବଂ ସେମାନଙ୍କ ଅବଜ୍ଞାକୁ 'ମହାପାପ' ବୋଲି ବର୍ଣ୍ଣନା କରିଛି । ବାଇବଲରେ ଅବଜ୍ଞାକାରୀ ପୁତ୍ରକୁ ବଧ କରିବାର ଆଦେଶ ରହିଛି । ବାଇବଲ କହେ :

> ''ଯେବେ କାହାରି ପୁତ୍ର ଅବାଧ ଓ ବିରୋଧୀ ହୁଏ, ଆପଣା ପିତାର କଥା କି ଆପଣା ମାତାର କଥା ନ ମାନେ, ପୁଣି ସେମାନେ ତାହାକୁ ଶାସନ କଲେ ହେଁ ସେମାନଙ୍କ କଥା ନ ଶୁଣେ, ତେବେ ତାହାର ପିତା ଓ ମାତା ତାହାକୁ ଧରି ତାହାର ନଗରସ୍ଥ ପ୍ରାଚୀନମାନଙ୍କ ନିକଟକୁ ତାହାର ନଗର ଦ୍ୱାରକୁ ନେଇଯିବେ; ପୁଣି ସେମାନେ ତାହାର ନଗରସ୍ଥ ପ୍ରାଚୀନମାନଙ୍କୁ କହିବେ, ଆମ୍ଭମାନଙ୍କର ଏହି ପୁତ୍ର ଅବାଧ ଓ ବିରୋଧୀ, ସେ ଆମ୍ଭମାନଙ୍କ କଥା ମାନେ ନାହିଁ, ସେ ଲୋଭୀ ଓ ମଦୁଆ ; ତହିଁରେ ତାହାର ନଗରସ୍ଥ ସମସ୍ତ ପୁରୁଷ ତାହାକୁ ପଥର ପକାଇ ବଧ କରିବେ । ଏହି ରୂପ ତୁମ୍ଭେ ଆପଣା ମଧ୍ୟରୁ ଦୁଷ୍ଟତା ଦୂର କରିବ । ତହିଁରେ ସମୁଦାୟ ଇସ୍ରାଏଲ ଶୁଣିବେ ଓ ଭୟ କରିବେ ।''

**ବାଇବଲ, ଦ୍ୱିତୀୟ ବିବରଣ ୨୧ : ୧୮-୨୧**

ବେଦ ମଧ୍ୟ ପିତା-ମାତାଙ୍କୁ ଦୁଃଖ ଦେଉଥିବା ପୁତ୍ରକୁ ଭର୍ତ୍ସନା କରି କହିଛି :

> ''ହେ ମନୁଷ୍ୟ ! ଯେଉଁ ପୁତ୍ରର ଉପସ୍ଥିତିରେ ପିତା-ମାତାଙ୍କର ଦୁଃଖ ହୁଏ ଓ ସେମାନେ ସତ୍କାର ପାଆନ୍ତି ନାହିଁ, ସେହି ଭାଗ୍ୟହୀନ ପୁତ୍ର ନିରନ୍ତର ପୀଡ଼ିତ ହୁଏ ଏବଂ ଯେଉଁ ପୁତ୍ରର ଉତ୍ତମ ସେବା

ଦ୍ୱାରା ମାତା-ପିତା ପ୍ରସନ୍ନ ହୁଅନ୍ତି, ସେ ପୁତ୍ର ଜନମୁଖରେ ପ୍ରଶଂସିତ ହୁଏ ଓ ସୁଖ ଭୋଗ କରେ ।''

ଋଗ୍‌ବେଦ, ଚତୁର୍ଥ ମଣ୍ଡଳ, ସୂକ୍ତ-୬, ମନ୍ତ୍ର-୭

''ପ୍ରଭୁଙ୍କ ପ୍ରସନ୍ନତା ପିତା-ମାତାଙ୍କ ପ୍ରସନ୍ନତା ମଧ୍ୟରେ ରହିଛି ଏବଂ ପ୍ରଭୁଙ୍କ କ୍ରୋଧ ପିତା-ମାତାଙ୍କ କ୍ରୋଧ ମଧ୍ୟରେ ରହିଛି ।''

ତିର୍‌ମିଜୀ, ୪ର୍ଥ ଖଣ୍ଡ, ହଦିସ୍ ୧୮୯୯

ଇସ୍‌ଲାମ ଶିକ୍ଷା ଦିଏ ଯେ, ପିତା-ମାତା ପଛେ ମୁସଲମାନ ନ ହୋଇ ଅନ୍ୟ ଯେକୌଣସି ଧର୍ମର ହୋଇଥାଆନ୍ତୁ, ଜଣେ ମୁସଲମାନ୍ ସେମାନଙ୍କ ସହ ଅତି ବିନମ୍ର ବ୍ୟବହାର କରିବା ଉଚିତ ଏବଂ ଭକ୍ତି କରିବା ଉଚିତ ।+

କେବଳ ଅସତ୍ୟ ବା ଅଧର୍ମର ଆଦେଶ ଦେଲେ ପିତାମାତାଙ୍କର ଆଦେଶ ଗ୍ରହଣୀୟ ନୁହେଁ । କିନ୍ତୁ ସେମାନଙ୍କ ସହ ଉତ୍ତମ ଭାବେ ନିର୍ବାହ କରିବା ଉଚିତ ।

ଈଶ୍ୱରଙ୍କ ଧର୍ମଦୂତ ମହାମାନ୍ୟ ମୁହମ୍ମଦ କହିଛନ୍ତି–

''ମହାପାପଗୁଡ଼ିକ ମଧ୍ୟରେ ସବୁଠାରୁ ବଡ଼ ପାପ ହେଲା (ପରମେଶ୍ୱର) ଅଲ୍ଲାହ୍‌ଙ୍କ ସହିତ ସହଭାଗିତା କରିବା, ନରହତ୍ୟା କରିବା, ପିତା-ମାତାଙ୍କୁ ଅବଜ୍ଞା କରିବା ଏବଂ ମିଥ୍ୟା ସାକ୍ଷ୍ୟ ପ୍ରଦାନ କରିବା ।''

ସହୀ ବୁଖାରୀ, ୯ମ ଖଣ୍ଡ, ହଦିସ୍-୧୦

ପିତା-ମାତାଙ୍କ ପରେ ବ୍ୟକ୍ତି ଉପରେ ଯାହାର ଅଧିକାର ରହିଛି ସେମାନେ ହେଲେ ପତ୍ନୀ, ସନ୍ତାନ ଏବଂ ଅନ୍ୟ ଆତ୍ମୀୟ ସ୍ୱଜନ । ପତ୍ନୀ ମଣିଷର ସୁଖ ଦୁଃଖକୁ ଆଦରି ତାକୁ ପ୍ରତି କ୍ଷେତ୍ରରେ ସହଯୋଗ କରିଥାଏ । ତା' ସନ୍ତାନକୁ ଜନ୍ମ ଦିଏ, ତା'ର ଏବଂ ତା' ସନ୍ତାନର ସେବାଯତ୍ନ କରିଥାଏ ଏବଂ ତା' ପାଇଁ ଅନେକ ତ୍ୟାଗ ସ୍ୱୀକାର କରିଥାଏ । ଏଣୁ, ପତ୍ନୀ ଓ ସନ୍ତାନର ଉତ୍ତମ ପ୍ରତିପୋଷଣ କରିବା ଏବଂ ସେମାନଙ୍କ ଯତ୍ନ ନେବା ମନୁଷ୍ୟ ଦାୟିତ୍ୱ । ନାରୀମାନଙ୍କ ସମ୍ପର୍କରେ ଈଶ୍ୱରଙ୍କ ଧର୍ମଦୂତ ନିଜର ଅନ୍ତିମ ତୀର୍ଥଯାତ୍ରା କାଳରେ ଲୋକମାନଙ୍କୁ ଉପଦେଶ ଦେଇ କହିଲେ :

+ ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ୍-୯

''ମୁଁ ତୁମମାନଙ୍କୁ ପତ୍ନୀମାନଙ୍କ ସହିତ ଉତ୍ତମ ବ୍ୟବହାର କରିବାର ଆଜ୍ଞା ଦେଉଅଛି, କାରଣ ସେମାନେ ତୁମର ଆଶ୍ରିତ ଏବଂ ତୁମ ଅଧିନରେ ରୁହନ୍ତି ।''

ତିରମିଜୀ, ୨ୟ ଖଣ୍ଡ, ହଦିସ୍-୧୧୬୩

ପତ୍ନୀର ସ୍ୱାମୀ ଉପରେ ଅଧିକାର ସମ୍ପର୍କରେ ମହାମାନ୍ୟ ଧର୍ମଦୂତ କହିଛନ୍ତି–

''ଏବଂ ତୁମ ଉପରେ ସେମାନଙ୍କର ଏହି ଅଧିକାର ରହିଛି ଯେ, ସେମାନଙ୍କ ଖାଦ୍ୟ ପୋଷାକ (ଇତ୍ୟାଦି) ବିଷୟରେ ତୁମେ ସେମାନଙ୍କର ଭଲ ରୂପେ ଯତ୍ନ ନିଅ ।''

ତିରମିଜୀ, ୨ୟ ଖଣ୍ଡ, ହଦିସ୍-୧୧୬୩

ସେହିପରି ପତ୍ନୀକୁ ପତିର ସେବା କରିବା ଏବଂ ତା' ଆଜ୍ଞା ପାଳନ କରିବାର ଆଦେଶ ଦିଆଯାଇଛି । ମହାମାନ୍ୟ ଧର୍ମଦୂତ କହିଛନ୍ତି :

''ଯେଉଁ ନାରୀ ମୃତ୍ୟୁବରଣ କରିବା ସମୟରେ ତା'ର ସ୍ୱାମୀ ତା' ଉପରେ ସନ୍ତୁଷ୍ଟ ଥାଏ, ସେ ଅବଶ୍ୟ ସ୍ୱର୍ଗରେ ପ୍ରବେଶ କରିବ ।''

ତିରମିଜୀ, ୨ୟ ଖଣ୍ଡ, ହଦିସ୍-୧୧୬୧



ସ୍ୱାମୀର ପତ୍ନୀ ଉପରେ ଥିବା ଅଧିକାର ବିଷୟରେ ମହାମାଦ୍ୟ ଧର୍ମଦୂତ କହିଲେ :

''ଯଦି କେହି ତା' ପତ୍ନୀକୁ ନିଜର ଆବଶ୍ୟକତା ପୂରଣ କରିବା ପାଇଁ ଡାକେ, ସେ ଚୁଲି ପାଖରେ ବସିଥିଲେ ମଧ ଆସିବା ଉଚିତ ।''

ତିରମିଜୀ, ୨ୟ ଖଣ୍ଡ, ହଦିସ୍-୧୧୬୦

ଏକ ଆଦର୍ଶ ପତ୍ନୀର ସଂଜ୍ଞା ନିରୂପଣ କରି ମହାମାନ୍ୟ ଧର୍ମଦୂତ ମହମ୍ମଦ କହିଛନ୍ତି ଯେ, ଉତ୍ତମ ପତ୍ନୀ ସେହି, ଯାହାକୁ ଦେଖିଲେ ତୁମ ମନ ଆନନ୍ଦିତ ହୋଇଯାଏ, ଯଦି ତୁମେ ତାକୁ କୌଣସି କାର୍ଯ୍ୟର ଆଦେଶ ଦିଅ, ସେ ତାକୁ ପାଳନ କରେ ଏବଂ ତୁମ ଅନୁପସ୍ଥିତିରେ ସେ ତୁମ ଘର, ଧନ ସମ୍ପତ୍ତି ତଥା ନିଜ ମାନସମ୍ମାନର ସୁରକ୍ଷା କରେ (ତିରମିଜୀ) ।

ସନ୍ତାନମାନଙ୍କ ଲାଳନ ପାଳନ ବ୍ୟତୀତ ସେମାନଙ୍କୁ ସଦ୍‌ଜ୍ଞାନର ଶିକ୍ଷା ଦେବା ଏବଂ ସେମାନଙ୍କର ଚରିତ୍ର ଗଠନ କରିବାର ଦାୟିତ୍ୱ ମଧ୍ୟ ପିତାମାତାଙ୍କ ଉପରେ ନ୍ୟସ୍ତ କରାଯାଇଛି । ମହାମାନ୍ୟ ଧର୍ମଦୂତ କହିଛନ୍ତି :

''ସଦାଚରଣର ଶିକ୍ଷା ପ୍ରଦାନ କରିବା ବ୍ୟତୀତ ଜଣେ ପିତା ପକ୍ଷରେ ସନ୍ତାନ ପାଇଁ ଆଉ ଅଧିକ ଭଲ କୌଣସି ଉପହାର ନାହିଁ ।''

**ତିରମିଜୀ, ୪ର୍ଥ ଖଣ୍ଡ, ହଦିସ୍-୧୯୫୨**

ସନ୍ତାନର ଖାଦ୍ୟ, ପୋଷାକ ତଥା ଅନ୍ୟାନ୍ୟ ପାର୍ଥିବ ଦିଗ ପ୍ରତି ସମସ୍ତେ ସଚେତନ ଥାଆନ୍ତି । କିନ୍ତୁ ତାର ଆଧ୍ୟାତ୍ମିକ ଏବଂ ଚାରିତ୍ରିକ ଦିଗ ପ୍ରତି ଅଧିକାଂଶ ପିତାମାତା ଯତ୍ନଶୀଳ ନଥିବା ଦେଖାଯାଏ । ପ୍ରତ୍ୟେକ ପିତାମାତାଙ୍କର ଏହା ସ୍ମରଣ ରଖିବା ଉଚିତ୍ ଯେ ସନ୍ତାନର ସୁଶିକ୍ଷା ଏବଂ ସୁଚରିତ୍ର ଗଠନ ବିଷୟରେ ସେମାନେ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ ।

ଏହାପରେ ବ୍ୟକ୍ତି ଉପରେ ନିଜର ଅନ୍ୟାନ୍ୟ ଆତ୍ମୀୟମାନଙ୍କର ଅଧିକାର ରହିଛି, ଯଥା–ଭାଇ-ଭଉଣୀ, ଦାଦା-ଖୁଡ଼ୀ, ମାମୁ, ମାଉସୀ ଇତ୍ୟାଦି । ଯେଉଁମାନେ ତା'ର ରକ୍ତ ସମ୍ପର୍କୀୟ, ଯେଉଁମାନଙ୍କ ହୃଦୟରେ ତା' ପାଇଁ ସ୍ୱାଭାବିକ ସ୍ନେହ ମମତା ରହିଛି, ଯିଏ ତା' ସୁଖ ଦୁଃଖ ବାଣ୍ଟିବାର ଅଭିଳାଷ ରଖନ୍ତି ଏବଂ ଯେଉଁମାନେ ତା'ଠାରୁ ମଧୁର ବ୍ୟବହାରର ଆଶାୟୀ, ଇସ୍‌ଲାମ ସେମାନଙ୍କ ସହିତ ଉତ୍ତମ ବ୍ୟବହାର କରିବା ଏବଂ ଯଥା ସମ୍ଭବ ଆର୍ଥିକ ସହାୟତା କରିବାର ଆଦେଶ ଦିଏ । ନିକଟ ସମ୍ପର୍କୀୟମାନଙ୍କ ସହିତ ସମ୍ପର୍କ ଛିନ୍ନ କରିବାକୁ ଇସ୍‌ଲାମ ଏକ ଗର୍ହିତ ଅପରାଧ ବୋଲି ବିବେଚନା କରେ ।

ଯାହାର ସମ୍ପର୍କ ଯେତେ ନିକଟତର, ତା'ର ଅଧିକାର ବ୍ୟକ୍ତି ଉପରେ ସେତିକି ଅଧିକ ଏବଂ ତା' ସହିତ ସମ୍ପର୍କ ଛିନ୍ନ କରିବା ସେତିକି ଗୁରୁତର ଅପରାଧ । ସମ୍ପର୍କ ଛିନ୍ନ କରିବା ଅର୍ଥ କୌଣସି ସମ୍ପର୍କୀୟ ସହିତ କଠୋର ବ୍ୟବହାର କରିବା କିମ୍ବା ସମ୍ଭବ ସହାୟତାରୁ ପଛଘୁଞ୍ଚା ଦେବା । ସମ୍ପର୍କୀୟମାନଙ୍କୁ ସେମାନଙ୍କର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରିବାକୁ ଇସ୍‌ଲାମରେ ମହାପାପ ବୋଲି ବର୍ଣ୍ଣନା କରାଯାଇଛି । ମହାମାନ୍ୟ ଧର୍ମଦୂତ ସତର୍କ କରି କହିଛନ୍ତି :

"ଯେଉଁ ବ୍ୟକ୍ତି ରକ୍ତ ସମ୍ପର୍କର ବନ୍ଧନ କାଟିଦିଏ, ସେ ବୈକୁଣ୍ଠରେ ପ୍ରବେଶ କରିବ ନାହିଁ ।"

ସହୀବୁଖାରୀ, ୮ମ ଖଣ୍ଡ, ହଦିସ୍-୧୩

ଯଦି କେହି ସମ୍ପର୍କୀୟ ସମ୍ପର୍କ ଛିନ୍ନ କରିବାକୁ ଚେଷ୍ଟା କରେ, ତା' ସହ ସମ୍ପର୍କରେ ଉନ୍ନତି ପାଇଁ ଚେଷ୍ଟା କରିବା ଉଚିତ ଏବଂ ଯଥାସମ୍ଭବ ତା' ପାଇଁ ନିଜ କର୍ତ୍ତବ୍ୟ କରିବା ଉଚିତ ।

ମାତ୍ର ଅଧିକାଂଶ ପରିବାରରେ ଏହାର ବ୍ୟତିକ୍ରମ ଦେଖାଯାଏ । ଅଧିକାଂଶ ଶତ୍ରୁତା ନିକଟ-ସମ୍ପର୍କୀୟମାନଙ୍କ ସହିତ ହିଁ ଦେଖିବାକୁ ମିଳେ । ଭାଇକୁ ଭାଇ କହିବାର ଶୁଣାଯାଏ–"ତୁଞ୍ଚି ମୁନରେ ମୁନେ ଜାଗା ଛାଡ଼ିବି ନାହିଁ ।"

ଅପରିଚିତ ଭିକାରିଟିକୁ ଦାନ ଦେଲାବେଳେ ଦୟାର ଅବତାର ଅଥଚ ରକ୍ତ ସମ୍ପର୍କୀୟମାନଙ୍କ ଦୁଃଖ କଷ୍ଟ ହୃଦୟକୁ ତିଳେମାତ୍ର ବିଚଳିତ କରେନାହିଁ । ବ୍ୟକ୍ତିଗତ ରାଗ, ରୋଷ ଏବଂ ଈର୍ଷା ଆତ୍ମୀୟସ୍ୱଜନମାନଙ୍କ ପ୍ରତି ହୃଦୟକୁ କଠୋର କରିଦିଏ । ଆତ୍ମୀୟମାନଙ୍କର ପ୍ରାଥମିକ ଆବଶ୍ୟକତାକୁ ଉପେକ୍ଷା କରି ଅପରିଚିତ ବ୍ୟକ୍ତିଟିକୁ ଦାନ କରିବା କୌଣସି ପୁଣ୍ୟ କାର୍ଯ୍ୟ ନୁହେଁ । ଈଶ୍ୱରଙ୍କ ସଂରଚିତ ଧର୍ମ ବ୍ୟବସ୍ଥାରେ ଅପରିଚିତ ଅପେକ୍ଷା ପରିଚିତର, ଦୂର ପଡ଼ୋଶୀ ଅପେକ୍ଷା ପାଖ ପଡ଼ୋଶୀର ଏବଂ ଦୂର ସମ୍ପର୍କୀୟ ଅପେକ୍ଷା ନିକଟ ସମ୍ପର୍କୀୟର ଅଗ୍ରାଧିକାର ରହିଛି । ଇସ୍‌ଲାମର ଉତ୍ତରାଧିକାରୀ ଆଇନ୍‌ରେ ବ୍ୟକ୍ତିର ମୃତ୍ୟୁ ପରେ ସେ ଛାଡ଼ିଯାଇଥିବା ଧନସମ୍ପତ୍ତିକୁ ତା'ର ସମ୍ପର୍କୀୟମାନଙ୍କ ମଧ୍ୟରେ ବିଧିବଦ୍ଧ ଭାବେ ବାଣ୍ଟିଦେବାର ଆଦେଶ ଦିଆଯାଇଛି । ଏଥିରୁ ବ୍ୟକ୍ତି ଉପରେ ସମ୍ପର୍କୀୟମାନଙ୍କର କିଭଳି ଧରଣର ଅଧିକାର ରହିଛି ତାହା ସହଜରେ ଅନୁମେୟ ।

ସମ୍ପର୍କୀୟମାନଙ୍କ ପରେ ପ୍ରତିବେଶୀମାନଙ୍କର ଇସ୍‌ଲାମରେ ଅଗ୍ରାଧିକାର ରହିଛି । ଯଦିଓ ସେମାନେ ରକ୍ତ ସମ୍ପର୍କୀୟ ନୁହଁନ୍ତି, କିନ୍ତୁ ଇସ୍‌ଲାମ ସେମାନଙ୍କ ସହ ସମ୍ପର୍କୀୟମାନଙ୍କ ଭଳି ବ୍ୟବହାର କରିବାର ଆଦେଶ ଦେଇଛି । ମହାମାନ୍ୟ ମୁହମ୍ମଦ କହିଲେ–

"ସ୍ୱର୍ଗଦୂତ ଜିବ୍ରାଇଲ୍ (Gabriel) ମୋତେ ପ୍ରତିବେଶୀମାନଙ୍କ ସହ ଦୟାପୂର୍ଣ୍ଣ ବ୍ୟବହାର କରିବା ପାଇଁ ଏପରି ଗୁରୁତ୍ୱ ଦେଇ

କହିଲେ ଯେ, ମୁଁ ଭାବିଲି ସେ ସେମାନଙ୍କୁ ମୋର ଉତ୍ତରାଧିକାରୀ କରିଦେବା ପାଇଁ ଆଦେଶ ଦେଇଦେବେ ।''

**ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ୍-୪୩**

ବ୍ୟକ୍ତି ସହ ପଡ଼ିଶାରେ ବସବାସ କରୁଥିବା ବ୍ୟକ୍ତିମାନେ ତାର ନିକଟତମ ପ୍ରତିବେଶୀ । କାରଖାନା ବା ଅଫିସ୍‌ରେ ମିଶି କାର୍ଯ୍ୟ କରୁଥିବା ସହକର୍ମୀ, ସହପାଠୀ ଏବଂ ସହଯାତ୍ରୀମାନେ ମଧ୍ୟ ପ୍ରତିବେଶୀର ଅନ୍ତର୍ଭୁକ୍ତ । ଏମାନେ ସମସ୍ତେ ସୁଃଖ-ଦୁଃଖ ଅବସରରେ ସହଭାଗୀ ଥାଆନ୍ତି ଏବଂ ବିପଦ ଆପଦରେ ସହାୟତା କରନ୍ତି । ରାତି ଦୁଇଟାରେ ମଧ୍ୟ ଯଦି କୌଣସି ବିପଦ ଆପଦ ପଡ଼ିଯାଏ, ତେବେ ବ୍ୟକ୍ତିର ସବୁଠାରୁ ଅତି ନିକଟରେ ତା' ପଡ଼ୋଶୀ ହିଁ ଥାଆନ୍ତି । କିନ୍ତୁ ଆମ ସାମାଜିକ ଅବସ୍ଥା ଏତେ ନିମ୍ନକୁ ଖସିଯାଇଛି ଯେ, ଅନେକ ଲୋକ ବର୍ଷ ବର୍ଷ ଧରି ତାଙ୍କ ପଡ଼ିଶାରେ ରହୁଥିବା ବ୍ୟକ୍ତିଙ୍କର ପରିଚୟ ମଧ୍ୟ ଜାଣନ୍ତି ନାହିଁ । ପଡ଼ୋଶୀ ଯେକୌଣସି ଧର୍ମର ହେଉ ନା କାହିଁକି, ଇସ୍‌ଲାମ ତା' ସହିତ ଉତ୍ତମ ବ୍ୟବହାର କରିବା ଏବଂ ତାକୁ ଯଥାସମ୍ଭବ ସହାୟତା କରିବାର ଆଦେଶ ଦେଇଛି । ପଡ଼ୋଶୀମାନଙ୍କୁ କୌଣସି ପ୍ରକାର କଷ୍ଟ ଦେବା ନିଷିଦ୍ଧ କରାଯାଇଛି । ମହାମାନ୍ୟ ଧର୍ମଦୂତ ସଚେତନ କରିଯାଇଛନ୍ତି :

''ସେହି ବ୍ୟକ୍ତି ବୈକୁଣ୍ଠରେ ପ୍ରବେଶ କରିପାରିବ ନାହିଁ, ଯାହାର ଦୁଷ୍କର୍ମରୁ ତା' ପଡ଼ୋଶୀ ସୁରକ୍ଷିତ ନୁହଁନ୍ତି ।''

**ସହୀ ମୁସଲିମ୍, ୧ମ ଖଣ୍ଡ, ହଦିସ୍-୭୪**

ପଡ଼ୋଶୀର ଅଧିକାର ସମ୍ପର୍କରେ ମହାମାନ୍ୟ ଧର୍ମଦୂତ କହିଛନ୍ତି–

''ସେହି ବ୍ୟକ୍ତି ଆଦୌ ମୁସଲମାନ ନୁହେଁ ଯିଏ ପେଟପୂରା ଭୋଜନ କରେ, ମାତ୍ର ତା' ପଡ଼ୋଶୀ ଉପାସ ଥାଏ ।''

ଏଥର ଆସନ୍ତୁ ଇସ୍‌ଲାମର ମୌଳିକ ମାନବାଧିକାର ସମ୍ପର୍କରେ ଆଲୋଚନା କରିବା । ଜଣେ ବ୍ୟକ୍ତି ସମ୍ପର୍କୀୟ ନ ହୋଇପାରେ, ଭାଇ-ବନ୍ଧୁ-କୁଟୁମ୍ବ ବା ପ୍ରତିବେଶୀ ମଧ୍ୟ ନ ହୋଇପାରେ । ସେ ଯେକୌଣସି ଧର୍ମାବଲମ୍ବୀ କିମ୍ବା ଯେକୌଣସି ଦେଶର ଲୋକ ହୋଇପାରେ, କିନ୍ତୁ ସେ ମନୁଷ୍ୟ ଏବଂ ଈଶ୍ୱରଙ୍କର ଶ୍ରେଷ୍ଠତମ ସୃଷ୍ଟି । ଆସନ୍ତୁ ଜାଣିବା ଯେ, କେବଳ ଜଣେ ମନୁଷ୍ୟ ହୋଇଥିବା ଦୃଷ୍ଟିରୁ ଇସ୍‌ଲାମ ତାକୁ ସମାଜରେ କି କି ଅଧିକାର ପ୍ରଦାନ କରିଛି ।

## ୧. ବଞ୍ଚିବାର ଅଧିକାର (Right to Life) :

ମନୁଷ୍ୟର ସମାଜରେ ସର୍ବପ୍ରଥମ ଅଧିକାର ହେଉଛି ତା' ବଞ୍ଚିରହିବାର ଅଧିକାର । ଯେଉଁ ସମାଜରେ ମନୁଷ୍ୟ ଜୀବନର କୌଣସି ମୂଲ୍ୟ ନଥାଏ, ସେଭଳି ସମାଜରେ ଶାନ୍ତି କୋଉଠୁ ଆସିବ ? ମାନବ ଜୀବନ ଅମୂଲ୍ୟ । ତେଣୁ ଏହାର ସୁରକ୍ଷା ପାଇଁ ବିଧିବଦ୍ଧ ବ୍ୟବସ୍ଥା ରହିବା ଉଚିତ । ଯାହା ଫଳରେ ପ୍ରତ୍ୟେକ ବ୍ୟକ୍ତି ନିଜକୁ ନିରାପଦ ଓ ସୁରକ୍ଷିତ ମନେ କରିବ ଏବଂ ସମାଜରେ ଶାନ୍ତି ଓ ସ୍ଥିରତା ବଜାୟ ରହିବ ।

ଏ ଧରଣୀ ବକ୍ଷରେ କେତେ ରକ୍ତ ନଦୀ ବୋହିଯାଇଛି ।
ସ୍ୱାର୍ଥ ପାଇଁ ଶାସକମାନେ ଅଗଣିତ ନରସଂହାର କରିଛନ୍ତି ।
ପ୍ରଥମ ବିଶ୍ୱଯୁଦ୍ଧରେ ୧୦ଲକ୍ଷ ଲୋକ ମୃତ୍ୟୁବରଣ କଲେ ।
ଦ୍ୱିତୀୟ ବିଶ୍ୱଯୁଦ୍ଧରେ ୩୫୦ଲକ୍ଷରୁ ଅଧିକ ଜୀବନ ନଷ୍ଟ ହେଲା ।
ରୋମ୍‌ରେ ମନୋରଞ୍ଜନ ପାଇଁ କ୍ରୀତଦାସମାନଙ୍କୁ ହିଂସ୍ରପଶୁଙ୍କ ଦ୍ୱାରା ସଂହାର କରାଯାଇଛି ।
ଆରବ ଦେଶରେ ପିତା ନିଜ ଶିଶୁ କନ୍ୟାକୁ ଜୀବନ୍ତ ସମାଧି ଦେଇଛି ।
ଭାରତରେ ନାରୀମାନଙ୍କୁ ସ୍ୱାମୀର ଚିତାରେ ଜୀବନ୍ତ ପୋଡ଼ି ଦିଆଯାଇଛି ।
ନିରୀହା ନବବଧୂମାନେ ଯୌତୁକ ଯୂଇରେ ଦଗ୍ଧ ହୋଇଛନ୍ତି ।
ଜନବହୁଳ ଅଞ୍ଚଳରେ ଓ ଯାତ୍ରୀବାହୀ ଟ୍ରେନ୍‌ରେ ବୋମା ବିସ୍ଫୋରଣ କରି ସାଧାରଣ ଲୋକମାନଙ୍କୁ ହତ୍ୟା କରାଯାଇଛି ।
ସାମ୍ପ୍ରଦାୟୀକ ଦଙ୍ଗା ସୃଷ୍ଟି କରି ନିରୀହ ମହିଳା ଓ ଶିଶୁମାନଙ୍କୁ ମଧ ଖଣ୍ଡ ଖଣ୍ଡ କରାଯାଇଛି ।
ମମତାମୟୀ ମା'ମାନେ ନିଜର ଗର୍ଭସ୍ଥ ସନ୍ତାନକୁ ହତ୍ୟା କରିଛନ୍ତି ।
ନରହତ୍ୟା ପାପରେ ଧରିତ୍ରୀ ରକ୍ତରଞ୍ଜିତ ।

ମାନବାଧିକାର ସମ୍ପର୍କରେ ଇସ୍‌ଲାମର ପ୍ରଥମ ବାର୍ତ୍ତା ହେଉଛି ଯେ, ମାନବ ଜୀବନ ଅମୂଲ୍ୟ । ଅନ୍ୟାୟରେ କାହାରି ପ୍ରାଣ ନେବାକୁ ମହାପାପ ଆଖ୍ୟା ଦିଆଯାଇଛି । ନରହତ୍ୟାର ସମସ୍ତ ସ୍ୱରୂପ ଯଥା–ହତ୍ୟା, ଆତ୍ମହତ୍ୟା, ଭ୍ରୁଣହତ୍ୟା ଇତ୍ୟାଦି ନିଷିଦ୍ଧ କରାଯାଇଛି । ମହାମାନ୍ୟ ମୁହମ୍ମଦ କହିଛନ୍ତି ଯେ, ଯିଏ ବିନା

ଅଧିକାରରେ ଅନ୍ୟର ରକ୍ତପାତ କରିବା ପାଇଁ ଚାହେଁ, ସେ ଅଲ୍ଲାହ୍‌ଙ୍କ ନିକଟରେ ସବୁଠାରୁ ଅଧିକ ଘୃଣ୍ୟ ବ୍ୟକ୍ତି ।+

ମହାମାନ୍ୟ ଧର୍ମଦୂତଙ୍କୁ ମହାପାପ ବିଷୟରେ ପ୍ରଶ୍ନ କରାଗଲା । ସେ ଉତ୍ତର ଦେଲେ ଯେ, ସେଗୁଡ଼ିକ ହେଉଛି :

୧) ଉପାସନାରେ ଅନ୍ୟ କାହାରିକୁ ଅଲ୍ଲାହ୍‌ଙ୍କ ସହ ଅଂଶୀଦାର କରିବା, ୨) ପିତାମାତାଙ୍କ ପ୍ରତି ନିଜ କର୍ତ୍ତବ୍ୟ ନ କରିବା, ୩) ନରହତ୍ୟା କରିବା (ଯାହାର ହତ୍ୟା ଅଲ୍ଲାହ୍ ନିଷିଦ୍ଧ କରିଛନ୍ତି) ଏବଂ ୪) ମିଥ୍ୟା ସାକ୍ଷ୍ୟ ଦେବା ।''

**ସହୀ ବୁଖାରୀ, ୩ୟ ଖଣ୍ଡ, ହଦିସ୍ ସଂ.୮୨୧**

ମାନବ ଜୀବନର ସୁରକ୍ଷା ଇସ୍‌ଲାମ ମାତୃଗର୍ଭରୁ ଆରମ୍ଭ କରେ । ଶିଶୁଟି ଭୂମିଷ୍ଠ ହେବା ପୂର୍ବରୁ ମାତୃଗର୍ଭରେ ମଧ୍ୟ ତା' ହତ୍ୟାକୁ ମହାପାପ ଆଖ୍ୟା ଦିଆଯାଇଛି । ଭ୍ରୁଣହତ୍ୟାକୁ ନିଷିଦ୍ଧ କରି କୁର୍‌ଆନ କହିଛି :

''ଏବଂ ଦାରିଦ୍ର୍ୟ ଭୟରେ ନିଜ ସନ୍ତାନମାନଙ୍କୁ ହତ୍ୟା କରନାହିଁ । ସେମାନଙ୍କୁ ଏବଂ ତୁମ୍ଭମାନଙ୍କୁ ଆମ୍ଭେ ହିଁ ଜୀବିକା ପ୍ରଦାନ କରୁ । ସେମାନଙ୍କୁ ହତ୍ୟା କରିବା ଅବଶ୍ୟ ମହାପାପ ।''

କୁର୍‌ଆନ ୧୭ : ୩୧



ସେହିପରି ଆତ୍ମହତ୍ୟାକୁ ନିଷିଦ୍ଧ କରି କୁର୍‌ଆନ କହେ :

''ହେ ବିଶ୍ୱାସକାରୀମାନେ, ତୁମ୍ଭେମାନେ ପରସ୍ପରର ଧନସମ୍ପତ୍ତିକୁ ଅନୁଚିତ ଉପାୟରେ ଆତ୍ମସାତ୍ କରନା; କିନ୍ତୁ ପାରସ୍ପରିକ ସହମତି କ୍ରମେ ବ୍ୟବସାୟ ହେବା ଉଚିତ । ଏବଂ ତୁମ୍ଭେମାନେ ନିଜେ ନିଜକୁ ହତ୍ୟା କରନାହିଁ, ନିଶ୍ଚିତ ଭାବରେ ଅଲ୍ଲାହ୍ ତୁମ୍ଭମାନଙ୍କ ପ୍ରତି ସଦା କରୁଣାମୟ ।''

କୁର୍‌ଆନ ୪ : ୨୯

---

+ ସହୀ ବୁଖାରୀ, ୯ମ ଖଣ୍ଡ, ହଦିସ୍-୨୧

ଜଣେ ବ୍ୟକ୍ତିକୁ ହତ୍ୟା କରିବା ପୃଥିବୀର ସମସ୍ତ ଲୋକମାନଙ୍କର ହତ୍ୟା ସହ ସମାନ ବୋଲି ବର୍ଣ୍ଣନା କରି ପବିତ୍ର କୁର୍‌ଆନ କହେ :

"ଯଦି କେହି ଏପରି ଜଣେ ବ୍ୟକ୍ତିର ପ୍ରାଣ ନିଏ, ଯିଏ କାହାରି ହତ୍ୟା କରିନାହିଁ କିମ୍ବା ଧରାପୃଷ୍ଠରେ ବିଶୃଙ୍ଖଳା ସୃଷ୍ଟି କରିନାହିଁ, ତେବେ ସେ ସମଗ୍ର ମାନବଜାତିକୁ ହତ୍ୟା କଲା ଏବଂ ଯିଏ କାହାରି ଜୀବନ ରକ୍ଷା କଲା, ସେ ସମଗ୍ର ମାନବଜାତିକୁ ରକ୍ଷା କଲା ।"

କୁର୍‌ଆନ ୫ : ୩୨

କୌଣସି ବ୍ୟକ୍ତିକୁ ଆଇନ୍‌ର ନିୟନ୍ତ୍ରଣରୁ ଉର୍ଦ୍ଧ୍ୱରେ ରଖିବା ଏବଂ ତାକୁ ମନଇଚ୍ଛା ଅତ୍ୟାଚାର କରିବା ପାଇଁ ସୁଯୋଗ ଦେବା ନ୍ୟାୟ ନୁହେଁ । କୁର୍‌ଆନ ଅନୁସାରେ ଯଦି କୌଣସି ବ୍ୟକ୍ତି ଅନ୍ୟର ଜୀବିତ ରହିବାର ଅଧିକାର ଛିନ୍ନ ନ କରେ, କିମ୍ବା ସମାଜରେ ବିଶୃଙ୍ଖଳା ସୃଷ୍ଟି ନ କରେ, ତେବେ ତା' ଜୀବନ ଅବଶ୍ୟ ଆଦରଣୀୟ । କିନ୍ତୁ ଯଦି ସେ ଅନ୍ୟାୟରେ କାହାରି ପ୍ରାଣ ନିଏ କିମ୍ବା ସମାଜରେ ଅଶାନ୍ତି ଓ ଆତଙ୍କ ସୃଷ୍ଟି କରେ, ତେବେ ତା'ର ମୃତ୍ୟୁ ହିଁ ସମାଜ ପାଇଁ ମଙ୍ଗଳଦାୟକ । ସମାଜର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଏଭଳି ଜଣେ ବ୍ୟକ୍ତିକୁ ପ୍ରାଣଦଣ୍ଡ ଦେବା ଠିକ୍, ସେହିପରି ଯେପରି ମନୁଷ୍ୟ ଜୀବନ ପ୍ରତି ବିପଦ ସୃଷ୍ଟି କରିଥିବା କୌଣସି ରୋଗଗ୍ରସ୍ତ ଅଙ୍ଗକୁ ଶରୀରରୁ କାଟି ଅଲଗା କରିଦିଆଯାଏ । ସମାଜର ସୁରକ୍ଷା ପାଇଁ ଏହା ଏକ ଉପଚାର । ଧର୍ମର ଏହି ସିଦ୍ଧାନ୍ତଟି କେବଳ କୁର୍‌ଆନରେ ନୁହେଁ, ବାଇବେଲ୍ ଓ ହିନ୍ଦୁଶାସ୍ତ୍ରରେ ମଧ୍ୟ ସମାନ ଭାବରେ ରହିଛି ।

ସମାଜରେ ଶାନ୍ତି ସ୍ଥାପନ ଓ ମାନବାଧିକାରର ସୁରକ୍ଷା ପାଇଁ ଶାସକ ବା ନ୍ୟାୟାଳୟ ଏହି ଦଣ୍ଡବିଧାନ କରିପାରିବେ । କୌଣସି ବ୍ୟକ୍ତିବିଶେଷର କାହାରି ପ୍ରାଣ ନେବାର ଅଧିକାର ନାହିଁ । ଉପଯୁକ୍ତ ଅଦାଲତ ହିଁ ଏହାର ନିଷ୍ପତ୍ତି କରିପାରିବ ଯେ, ଜଣେ ବ୍ୟକ୍ତି ପ୍ରକୃତରେ ଅନ୍ୟର ହତ୍ୟା କରି ବା ସମାଜର ଶାନ୍ତି ପ୍ରତି ବିପଦ ସୃଷ୍ଟି କରି ନିଜର ବଞ୍ଚି ରହିବାର ଅଧିକାର ହରାଇଛି ନା ନାହିଁ ।

ଏହି ଦୁଇଟି କାରଣକୁ ଛାଡ଼ିଦେଲେ ମାନବ ଜୀବନ ଅବଶ୍ୟ ଆଦରଣୀୟ । ଏହାର ସୁରକ୍ଷା ପାଇଁ ସମସ୍ତ ସମ୍ଭବ ପ୍ରୟାସ ହେବା ଉଚିତ । କ୍ଷୁଧାର୍ଥକୁ ଖାଦ୍ୟ ଦେବା, ରୋଗଗ୍ରସ୍ତର ଚିକିତ୍ସା କରିବା ଏବଂ ଦୁର୍ଘଟଣା, ଭୂମିକମ୍ପ, ବନ୍ୟା ଆଦି ଦୁର୍ବିପାକରେ ପୀଡ଼ିତମାନଙ୍କର ସହାୟତା କରିବା ମହତ କାର୍ଯ୍ୟ,

ଯାହାଦ୍ୱାରା ଅନେକ ଅମୂଲ୍ୟ ଜୀବନ ରକ୍ଷା ପାଇଯାଏ । ଇସ୍‌ଲାମ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଏହି ମହତ କାର୍ଯ୍ୟ କରିବାର ଶିକ୍ଷା ଦେଉଛି । ଗୋଟିଏ ଜୀବନ ବଞ୍ଚାଇବା ସମଗ୍ର ପୃଥିବୀବାସୀଙ୍କ ଜୀବନ ବଞ୍ଚାଇବା ସହ ସମାନ ବୋଲି ବର୍ଣ୍ଣନା କରି ପବିତ୍ର କୁର୍‌ଆନ କହିଛି :

"ଯିଏ କାହାରି ଜୀବନ ରକ୍ଷା କଲା, ସେ ସମଗ୍ର ମାନବଜାତିକୁ ରକ୍ଷା କଲା ।"

କୁର୍‌ଆନ ୫ : ୩୨

ମାନବ ଜୀବନର ସୁରକ୍ଷା ପାଇଁ ଇସ୍‌ଲାମ କେତେ ସଚେତନ, ତାହା ମହାମାନ୍ୟ ମୁହମ୍ମଦଙ୍କ ନିମ୍ନ ଶିକ୍ଷାରୁ ସ୍ପଷ୍ଟ ଅନୁମେୟ ।

ଯଦି କୌଣସି ଅଞ୍ଚଳରେ ପ୍ଲେଗ୍ ବା ମହାମାରୀ ବ୍ୟାପିଥାଏ, ସେଠାରେ ବାସ କରୁଥିବା ବ୍ୟକ୍ତିକୁ ସେ ଅଞ୍ଚଳ ତ୍ୟାଗ କରି ଅନ୍ୟ ସ୍ଥାନକୁ ଯିବା ପାଇଁ ବାରଣ କରାଯାଇଛି । ମହାମାନ୍ୟ ଧର୍ମଦୂତ କହିଛନ୍ତି ଯେ, ଯଦି ସେ ଧୈର୍ଯ୍ୟଧରି ସେହିଠାରେ ରହେ ଏବଂ ଏହା ବିଶ୍ୱାସ କରେ ଯେ, ତାହାହିଁ ହେବ ଯାହା ଅଲ୍ଲାହ୍ ତା' ଭାଗ୍ୟରେ ଲେଖିଦେଇଥିବେ, ତେବେ ସେ ବ୍ୟକ୍ତି ଜଣେ ଶହୀଦ୍‌ର ପୁଣ୍ୟ ଅର୍ଜନ କରିବ ।+ ପ୍ରକାଶ୍ୟରେ ଏହି ଶିକ୍ଷାରୁ ଜଣାପଡୁଛି ଯେ, ଇସ୍‌ଲାମ ଜଣେ ବ୍ୟକ୍ତିକୁ ମହାମାରୀ ବ୍ୟାପିଥିବା ଅଞ୍ଚଳରେ ରହିବାର ଆଦେଶ ଦେଇ ତା' ଜୀବନକୁ ବିପନ୍ନ କରୁଛି । କିନ୍ତୁ ପ୍ରକୃତରେ ଅନ୍ୟ ଜନବସତିକୁ ମହାମାରୀ ସଂକ୍ରମିତ ନ ହେଉ ଏବଂ ବହୁ ଲୋକଙ୍କର ଜୀବନ ନ ଯାଉ, ଏଥିପାଇଁ ଇସ୍‌ଲାମ ସତର୍କତା ଗ୍ରହଣ କରିଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା ପରେ ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ କେତେକ ଶାନ୍ତିକାମୀ ରାଷ୍ଟ୍ରମାନଙ୍କର ପ୍ରଚେଷ୍ଟା ଫଳରେ ୧୯୪୫ ମସିହାରେ ମିଳିତ ଜାତିସଂଘ ଗଠିତ ହେଲା ଏବଂ ୧୯୪୮ ମସିହାରେ ମାନବାଧିକାରଗୁଡ଼ିକର ସୁରକ୍ଷା ପାଇଁ ଜାତିସଂଘ ଦ୍ୱାରା ଏକ ଘୋଷଣାନାମା ପ୍ରକାଶିତ ହେଲା, ଯାହାକୁ 'Universal Declaration of Human Rights' କୁହାଯାଏ । ଏହି ଘୋଷଣାନାମାର ଧାରା-୩ରେ ପ୍ରତ୍ୟେକ ବ୍ୟକ୍ତିକୁ ଜୀବନର ସୁରକ୍ଷାର ଅଧିକାର ପ୍ରଦାନ କରାଯାଇଛି । ଆମ ଭାରତର ସମ୍ବିଧାନର ଧାରା-୨୧ ଅନୁସାରେ

+ ସହୀ ବୁଖାରୀ, ଅଷ୍ଟମ ଖଣ୍ଡ, ହଦିସ୍ ୬୧୬

କୌଣସି ବ୍ୟକ୍ତିକୁ ସମାଜରେ ଜୀବିତ ରହିବାର ଅଧିକାରରୁ ବଞ୍ଚିତ କରାଯାଇ ପାରିବ ନାହିଁ ।

କୌଣସି ଦେଶର ଆଇନ୍ ଏବଂ ଦିବ୍ୟ ଆଇନ୍ ମଧ୍ୟରେ ମୁଖ୍ୟ ପାର୍ଥକ୍ୟ ଏହି ଯେ, ଜଣେ ବ୍ୟକ୍ତି ହୁଏତ ଦେଶର ଆଇନ୍ ଆଖିରୁ ଖସିଯାଇ ପାରେ; କିନ୍ତୁ ଦିବ୍ୟ ଆଇନ୍‌ରୁ ସେ କସ୍ମିନ୍‌କାଳେ ଖସିପାରିବ ନାହିଁ ।

## ୨. ଜୀବନର ସର୍ବନିମ୍ନ ଆବଶ୍ୟକତାର ଅଧିକାର (Right to basic needs)

ପ୍ରତ୍ୟେକ ମନୁଷ୍ୟର କିଛି ମୌଳିକ ଆବଶ୍ୟକତା ରହିଛି । ତା'ର ଅସ୍ତିତ୍ୱ ପାଇଁ ଯେପରି ଶ୍ୱାସ-ପ୍ରଶ୍ୱାସ ଓ ଜଳର ଆବଶ୍ୟକତା ରହିଛି, ସେହିପରି ଖାଦ୍ୟ, ବସ୍ତ୍ର ଓ ବାସଗୃହର ଆବଶ୍ୟକତା ମଧ୍ୟ ରହିଛି । କ୍ଷୁଧାର୍ଥ ପାଇଁ ଖାଦ୍ୟ, ବସ୍ତ୍ରହୀନ ପାଇଁ ବସ୍ତ୍ର, ବାସହୀନ ପାଇଁ ଆଶ୍ରୟ, ରୋଗୀ ପାଇଁ ଚିକିତ୍ସା ଏବଂ ବିପଦ-ଆପଦରେ ସହାୟତା ଆଦି ମନୁଷ୍ୟର ସମାଜରେ ସର୍ବନିମ୍ନ ଅଧିକାର । ତେଣୁ ମୁସଲମାନ ହେଉ ବା ଅଣ-ମୁସଲମାନ, ଶତ୍ରୁ ହେଉ ବା ମିତ୍ର, ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କର ସହାୟତା କରିବା ଏବଂ ସେମାନଙ୍କର ମୌଳିକ ଆବଶ୍ୟକତାଗୁଡ଼ିକୁ ପୂରଣ କରିବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ ଏବଂ ଏହି କର୍ତ୍ତବ୍ୟର ପାଳନ ବ୍ୟକ୍ତିର ନିଜ ପରିବାର ମଧ୍ୟରୁ ହିଁ ଆରମ୍ଭ ହୁଏ ।



ମନୁଷ୍ୟର ଏହି ସର୍ବନିମ୍ନ ଆବଶ୍ୟକତାଗୁଡ଼ିକ ପୂରଣ ନ ହୋଇପାରିଲେ ମନୁଷ୍ୟ ଜୀବିତ ରହିପାରିବ ନାହିଁ କିମ୍ବା ସମାଜକୁ କିଛି ଅବଦାନ ଦେଇପାରିବ ନାହିଁ । ତେଣୁ ମାନବ ଜୀବନର ସୁରକ୍ଷା ଇସ୍‌ଲାମରେ ଏକ ମହାନ୍ ପୁଣ୍ୟ କାର୍ଯ୍ୟ । ଏଣୁ ଈଶ୍ୱର କୁର୍‌ଆନରେ କହିଛନ୍ତି–

> "ଯିଏ କାହାରି ଜୀବନ ରକ୍ଷା କଲା, ସେ ସମଗ୍ର ମାନବଜାତିକୁ ରକ୍ଷା କଲା ।"

କୁର୍‌ଆନ ୫ : ୩୨

ପ୍ରତ୍ୟେକ ବ୍ୟକ୍ତିକୁ ନିଜ ସମ୍ପର୍କୀୟ, ପ୍ରତିବେଶୀ, ସାହିବସ୍ତିର ଦୀନଦୁଃଖୀ, ଋଣଗ୍ରସ୍ତ ଓ ଅନାଥମାନଙ୍କୁ ଅକୁଣ୍ଠିତ ଚିତ୍ତରେ ସହାୟତା କରିବାର ଆଦେଶ ଦେଇ ଈଶ୍ୱର କହିଛନ୍ତି :

"ପୂର୍ବଦିଗକୁ ମୁହଁ କରିବା ବା ପଶ୍ଚିମ ଦିଗକୁ ମୁହଁ କରିବା କୌଣସି ପୁଣ୍ୟ କାର୍ଯ୍ୟ ନୁହେଁ, ବରଂ ପୁଣ୍ୟବାନ୍ ହେଉଛି ସେହି ବ୍ୟକ୍ତି ଯିଏ ଅଲ୍ଲାହ୍, ପରଲୋକ, ସ୍ୱର୍ଗଦୂତ, ଦିବ୍ୟଗ୍ରନ୍ଥ ଏବଂ ଧର୍ମଦୂତମାନଙ୍କୁ (ଆନ୍ତରିକତା ସହ) ବିଶ୍ୱାସ କରେ ଏବଂ ଅଲ୍ଲାହ୍‌ଙ୍କ ପ୍ରେମରେ ନିଜ ଧନ ଆତ୍ମୀୟ-ସ୍ୱଜନ, ଅନାଥ, ଦରିଦ୍ର, ପଥିକ, ଭିକ୍ଷୁକ ଓ କ୍ରୀତଦାସମାନଙ୍କ (ମୁକ୍ତି) ପାଇଁ ବ୍ୟୟ କରେ ଏବଂ ନିୟମିତ ନମାଜ ପ୍ରତିଷ୍ଠା କରେ, ଜକାତ୍ ଦିଏ, ଯଦି କୌଣସି ଅଙ୍ଗୀକାର କରେ ତେବେ ତାକୁ ପୂର୍ଣ୍ଣ କରେ ଏବଂ ଅଭାବ-ଅନାଟନ, ଦୁଃଖ-ବିପଦ ଓ ଯୁଦ୍ଧ ସମୟରେ ଧୈର୍ଯ୍ୟ ଧାରଣ କରେ । ଏହି ବ୍ୟକ୍ତିମାନେ ସତ୍ୟବାଦୀ ଏବଂ ଏହିମାନେ ହିଁ ପ୍ରକୃତରେ ଧର୍ମପ୍ରାଣ ।"

କୁର୍‌ଆନ ୨ : ୧୭୭

ଇସଲାମ ଏହା ଚାହେଁ ଯେ, କୁଟୁମ୍ବ ବା ସାହି ବସ୍ତିର ଆର୍ଥିକ ସ୍ୱଚ୍ଛଳ ବ୍ୟକ୍ତିମାନେ ଦୁର୍ବଳ ଏବଂ ଅସହାୟମାନଙ୍କୁ ସହାୟ ହୁଅନ୍ତୁ, ଅନାଥ ବିଧବାମାନଙ୍କର ଖବର ନିଅନ୍ତୁ, କ୍ଷୁଧାର୍ଥ ପାଇଁ ଭୋଜନ, ବସ୍ତ୍ରହୀନ ପାଇଁ ବସ୍ତ୍ର, ବାସହୀନ ପାଇଁ ଆଶ୍ରୟ ଏବଂ ରୋଗୀ ପାଇଁ ଚିକିତ୍ସା ବ୍ୟବସ୍ଥା କରନ୍ତୁ । ଗୁପ୍ତ ଭାବରେ ସେମାନଙ୍କୁ ସାହାଯ୍ୟ କରନ୍ତୁ ଏବଂ ଦୁର୍ବଳମାନଙ୍କୁ ନିଜ ଗୋଡ଼ରେ ଛିଡ଼ା ହେବାରେ ସହାୟ ହୁଅନ୍ତୁ । ଈଶ୍ୱରପ୍ରଦତ୍ତ ଧନକୁ କେବଳ ନିଜ ବ୍ୟବହାରରେ ଖର୍ଚ୍ଚ ନ କରନ୍ତୁ । କୁର୍‌ଆନରେ ପରମେଶ୍ୱର କହିଛନ୍ତି :

"(ହେ ମୁହମ୍ମଦ), ଲୋକେ ଆପଣଙ୍କୁ ପ୍ରଶ୍ନ କରୁଛନ୍ତି ଯେ 'ଆମେ କଣ ଖର୍ଚ୍ଚ କରିବା ?' ଆପଣ କୁହନ୍ତୁ- ଧନ ଖର୍ଚ୍ଚକର ପିତାମାତାଙ୍କ ପାଇଁ, ଆତ୍ମୀୟ ସ୍ୱଜନଙ୍କ ପାଇଁ, ଅନାଥ ଦରିଦ୍ର ତଥା ପଥିକ ମାନଙ୍କ ପାଇଁ, ଏବଂ ଯେ କୌଣସି ଉପକାର ତୁମେ କରିବ, ଅଲ୍ଲାହ ନିଶ୍ଚୟ ସେ ବିଷୟରେ ଅବଗତ ହେବେ ।"

କୁରଆନ ୨:୨୧୫

ଅନ୍ୟ ଏକ ସ୍ଥାନରେ ପରମେଶ୍ୱର କୁହନ୍ତି :

"ଯେଉଁମାନେ ଦିନରେ ଏବଂ ରାତିରେ, ପ୍ରକାଶ୍ୟରେ ବା ଗୋପନରେ ସେମାନଙ୍କର ଧନ ଖର୍ଚ୍ଚ କରନ୍ତି, ସେମାନଙ୍କ ପାଇଁ

ସେମାନଙ୍କର ପାଳନ କର୍ତ୍ତାଙ୍କ ନିକଟରେ ଉଚିତ ପ୍ରତିଦାନ ରହିଛି, ଏବଂ ସେମାନଙ୍କର କୌଣସି ଭୟ ନାହିଁ ବା କେବେ ଦୁଃଖ କଷ୍ଟ ପାଇବେ ନାହିଁ।''

କୁରଆନ ୨:୨୭୪

ଈଶ୍ୱରଙ୍କ ଧର୍ମଦୂତ କହିଛନ୍ତି :

''ଜଣେ ଦରିଦ୍ର ବା ବିଧବାର ଯତ୍ନ ନେଉଥିବା କିମ୍ବା ତାଙ୍କ ସହାୟତା ପାଇଁ ଉଦ୍ୟମ କରୁଥିବା ବ୍ୟକ୍ତି ଅଲ୍ଲାହ୍‌ଙ୍କ ମାର୍ଗରେ ସଂଗ୍ରାମ କରୁଥିବା ବ୍ୟକ୍ତି ସହ ସମାନ କିମ୍ବା ସେହି ବ୍ୟକ୍ତି ସଦୃଶ ଯିଏ ଦିନ ସାରା ଉପବାସ ପାଳନ କରେ ଏବଂ ରାତି ସାରା ନମାଜ ପଢ଼େ।''

ସହୀ ବୁଖାରୀ, ୭ମ ଖଣ୍ଡ, ହଦିସ୍-୨୬୫

ମନୁଷ୍ୟ ସର୍ବଦା ଚାହେଁ ଯେ ତା' ଧନ ସମ୍ପତ୍ତି ବଢୁଥାଉ । ଏହାର କୌଣସି ଏକ ନିର୍ଦ୍ଦିଷ୍ଟ ପରିମାଣ ତାକୁ ସନ୍ତୁଷ୍ଟ କରିପାରେ ନାହିଁ । ଧନ ଅର୍ଜନ ପାଇଁ ସେ ଦିନ ରାତି ଉଦ୍ୟମ କରୁଥାଏ । ଲକ୍ଷପତି କୋଟିପତି ହେବାପାଇଁ ଚେଷ୍ଟା କରେ ଏବଂ କୋଟିପତି ମଧ୍ୟ ସନ୍ତୁଷ୍ଟ ହୋଇ ବସେ ନାହିଁ ।



ବାସ୍ତବରେ ଅର୍ଥ ଜୀବନର ଆବଶ୍ୟକତାଗୁଡ଼ିକୁ ପୂରଣ କରିବାର ଏକ ମାଧ୍ୟମ ମାତ୍ର । ଏହା ଜୀବନର ଲକ୍ଷ ହେବା ଉଚିତ ନୁହେଁ । ଇସଲାମ କହେ–ଯାହା କିଛି ଐଶ୍ୱର୍ଯ୍ୟ ମଣିଷ ପ୍ରାପ୍ତି କରେ, ତାହା ତାର ନିଜସ୍ୱ ନୁହେଁ, ବରଂ ପରମେଶ୍ୱରଙ୍କର କୃପା । ଅବଶ୍ୟ ଯାହା ସ୍ୱାଭାବିକ ଆବଶ୍ୟକତା, ତାହା ମନୁଷ୍ୟର ଅଧିକାର, ଯଥା–ଭୋଜନ, ବସ୍ତ୍ର ଓ ବାସଗୃହ ଇତ୍ୟାଦି । ଯଦି ଏତିକି ତାକୁ ମିଳିଯାଏ ତେବେ ତାକୁ ତାର ସର୍ବନିମ୍ନ ଅଧିକାର ମିଳିଗଲା । ଏହାଠାରୁ ଅଧିକ ତା' ନିକଟରେ ଯାହା ରହିଲା, ସେଗୁଡ଼ିକ ଜୀବନର ସର୍ବନିମ୍ନ ଆବଶ୍ୟକତାରୁ ବଞ୍ଚିତ ଦୀନ-ଦିରିଦ୍ରମାନଙ୍କର ଅଧିକାର ।

ଇସ୍‌ଲାମରେ ନିଜର ତଥା ପରିବାରର ଜୀବନ ନିର୍ବାହ ପାଇଁ ଯେତିକି ଅର୍ଥର ପ୍ରୟୋଜନ ସେତିକି ରଖିବାର ଅନୁମତି ଦେଇ ବଳକା ଧନ ଦୀନ-ଦୁଃଖୀମାନଙ୍କୁ ବଣ୍ଟନ କରିଦେବା ପାଇଁ ଉତ୍ସାହିତ କରାଯାଇଛି । ସୁତରାଂ କୁରଆନ କହିଛି :

''ଆଉ ସେମାନେ (ହେ ମୁହମ୍ମଦ !) ତୁମକୁ ପଚାରୁଛନ୍ତି ଯେ, ସେମାନେ କେତେ ଖର୍ଚ୍ଚ କରିବେ । ତୁମେ କୁହ–ଯାହା କିଛି ତୁମ ପ୍ରୟୋଜନଠାରୁ ବଳକା ରହେ ।''

କୁର୍‌ଆନ ୨ : ୨୧୯

ସମାନ ଧରଣର ଶିକ୍ଷା ବେଦ ମଧ୍ୟ ଦିଅନ୍ତି । ସୁତରାଂ ବେଦ କହେ :

''ମନୁଷ୍ୟ ଦୁଃଖରେ ଶୋଚନା କରିବା ଏବଂ ସୁଖରେ ଉତ୍‌ଫୁଲ୍ଲିତ ହେବା ଉଚିତ୍ ନୁହେଁ । ଜଣେ ଅନ୍ୟ ଜଣକର ଉପକାର ନିମନ୍ତେ ଭଲଭାବରେ ଚିତ୍ତ ଲଗାଇବା ଏବଂ ଯାହା ଐଶ୍ୱର୍ଯ୍ୟ ଅଛି, ସେସବୁକୁ ସୁଖ ନିମନ୍ତେ ବଣ୍ଟନ କରିବା ଉଚିତ ।''

ଋଗ୍‌ବେଦ, ପ୍ରଥମ ମଣ୍ଡଳ, ସୂକ୍ତ-୧୪୦, ମନ୍ତ୍ର-୧୧

କୃପଣତା ସମାଜ କଲ୍ୟାଣ ପଥରେ ଏକ ବଡ଼ ପ୍ରତିବନ୍ଧକ । ଏଣୁ ଇସ୍‌ଲାମ ଲୋଭ, ମୋହ ଓ କୃପଣତାକୁ ଘୃଣା କରେ ଏବଂ ଉଦାର ମନୋଭାବ ନେଇ ଦୀନଦୁଃଖୀଙ୍କର ସହାୟତା କରିବାର ଶିକ୍ଷା ଦିଏ । ମହାମାନ୍ୟ ମୁହମ୍ମଦ ଥରେ କହିଲେ :

''ଯଦି ମୋ ପାଖରେ ଉହଦ୍ ପାହାଡ଼ ଭଳି ସୁନା ଥାଆନ୍ତା, ତେବେ କେବଳ ଋଣ ପରିଶୋଧ କରିବା ଉଦ୍ଦେଶ୍ୟ ବ୍ୟତୀତ ସେଥିରୁ କିଛି ମଧ୍ୟ ମୁଁ ତିନି ରାତ୍ରିରୁ ଅଧିକ ନିଜ ପାଖରେ ରଖିବା ପସନ୍ଦ କରନ୍ତି ନାହିଁ ।''

ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ୍ ୪୫୨

କ୍ଷୁଧାର୍ଥଙ୍କୁ ଭୋଜନ, ରୋଗୀ ପାଇଁ ଚିକିତ୍ସା ଓ କ୍ରୀତଦାସମାନଙ୍କୁ ମୁକ୍ତ କରିବା ପାଇଁ ଧନ ଖର୍ଚ୍ଚ କରିବାର ଉପଦେଶ ଦେଇ ଇସ୍‌ଲାମର ଧର୍ମଦୂତ କହିଛନ୍ତି :

''କ୍ଷୁଧାର୍ଥଙ୍କୁ ଭୋଜନ ଦିଅ, ରୋଗୀ ସହ ସାକ୍ଷାତ୍ କର ଏବଂ କ୍ରୀତଦାସମାନଙ୍କୁ ମୁକ୍ତ କର ।''

ସହୀ ବୁଖାରୀ, ୭ମ ଖଣ୍ଡ, ହଦିସ୍ ୫୫୨

ଏହା ବ୍ୟତୀତ ଦାରିଦ୍ର୍ୟ ନିବାରଣ ପାଇଁ ଇସ୍‌ଲାମରେ ବାଧ୍ୟତାମୂଳକ ଦାନ ବା ଜକାତ୍ ବ୍ୟବସ୍ଥା ଅଛି । ଏହି ଧନ ସମାଜର ସ୍ୱଚ୍ଛଳବର୍ଗଙ୍କଠାରୁ ସଂଗୃହୀତ ହୋଇ ଲୋକଙ୍କର ସର୍ବନିମ୍ନ ଆବଶ୍ୟକତାଗୁଡ଼ିକ ପୂର୍ଣ୍ଣ କରିବାରେ ଏବଂ ଅନ୍ୟାନ୍ୟ କଲ୍ୟାଣମୂଳକ କାର୍ଯ୍ୟରେ ବ୍ୟବହୃତ ହୁଏ ।

ଆମ ଭାରତରେ ପୃଥିବୀର ସର୍ବାଧିକ ଭୋକିଲା ମଣିଷ ରହନ୍ତି । ଜାତିସଂଘର ଆକଳନ ଅନୁଯାୟୀ ମୋଟ୍ ୮୫କୋଟି ୪୦ଲକ୍ଷ ଭୋକିଲାଙ୍କ ମଧ୍ୟରୁ କେବଳ ଭାରତରେ କୋଡ଼ିଏ କୋଟି ଭୋକିଲା ଅଛନ୍ତି । ପ୍ରତି ପାଞ୍ଚଜଣ ଭାରତୀୟଙ୍କ ମଧ୍ୟରୁ ଜଣେ ଭୋକିଲା ରହୁଛି । ଦାରିଦ୍ର୍ୟରେ ଆମ ରାଜ୍ୟ ଓଡ଼ିଶା ମଧ୍ୟ ଏକ ନମ୍ବର । ଓଡ଼ିଶାର ଶତକଡ଼ା ୬୬ଭାଗ ଲୋକ ଅଧାପେଟ ରୁହନ୍ତି । ଜାତୀୟ ନମୁନା ସର୍ଭେ ସଙ୍ଗଠନ (NSSO)ର ରିପୋର୍ଟ ଅନୁଯାୟୀ ଓଡ଼ିଶାର ମାତ୍ର ୩୪ ପ୍ରତିଶତ ପରିବାରକୁ ବର୍ଷ ସାରା ପେଟପୂରା ଖାଇବାକୁ ମିଳେ ।+

ଧନସମ୍ପତ୍ତିର ମୋହ ଧାର୍ମିକ ବୋଲାଉଥିବା ଅନେକ ବ୍ୟକ୍ତିଙ୍କୁ ମଧ୍ୟ ଗ୍ରାସ କରିନେଇଛି । ଈଶ୍ୱର କୃପା କରିଛନ୍ତି ଯେ, ପାଣି ପବନ ଭଳି ଅତ୍ୟାବଶ୍ୟକୀୟ ବସ୍ତୁଗୁଡ଼ିକୁ ନିଜ ଆୟତ୍ତରେ ରଖିଛନ୍ତି, ତେଣୁ ଗରୀବମାନଙ୍କୁ ଏହା ବିନା ମୂଲ୍ୟରେ ମିଳିଯାଏ । ଯଦି ଏଗୁଡ଼ିକ ମନୁଷ୍ୟ ଅଧୀନରେ ରଖି ତାକୁ ଗରୀବମାନଙ୍କୁ ଦାନ କରିବାର ଆଦେଶ ଦିଆଯାଇଥାଆନ୍ତା, ତେବେ ବୋଧହୁଏ ଜଣେ ଗରିବକୁ ପାଞ୍ଚମିନିଟ୍ ନିଶ୍ୱାସ ନେବାପାଇଁ ପାଞ୍ଚଟଙ୍କା ଏବଂ ଗିଲାସେ ପାଣି ପାଇଁ ଦଶଟଙ୍କା ଦେବାକୁ ପଡ଼ନ୍ତା ।

ଯଦି ପ୍ରତ୍ୟେକ ସମାଜର ଲୋକେ ଈଶ୍ୱରଙ୍କ ଆଦେଶ ଅନୁଯାୟୀ ଦୀନ-ଦୁଃଖୀଙ୍କ ପାଇଁ ଖର୍ଚ୍ଚ କରନ୍ତି, ଦାରିଦ୍ର୍ୟ ଆଦୌ ଏକ ସମସ୍ୟା ହୋଇ ରୁହନ୍ତା ନାହିଁ । ମାତ୍ର ତିନିଜଣ ସର୍ବାଧିକ ଧନଶାଳୀ ବ୍ୟକ୍ତିଙ୍କର ଆୟ ପୃଥିବୀର ପ୍ରାୟ ୪୮ଟି ଗରିବ ରାଷ୍ଟ୍ରର ଜି.ଡି.ପି. (GDP) ସହ ସମାନ । ଯଦି ବିଶ୍ୱର ମାତ୍ର ୧୦୦ଜଣ ଧନୀବ୍ୟକ୍ତି ପ୍ରତିବର୍ଷ ସେମାନଙ୍କ ଧନର କେବଳ ଶତକଡ଼ା ୨.୫ଭାଗ ଲୋକଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ ପାଇଁ ଦାନ କରନ୍ତି, ତେବେ ଦାରିଦ୍ର୍ୟ ବିଶ୍ୱରୁ ଲୋପ ପାଇଯିବ ।

---

+ ଦୈନିକ ସମ୍ବାଦ, ତା.୨୯.୧୧.୨୦୦୭ରେ ପ୍ରକାଶିତ

ଇସ୍‌ଲାମରେ ସାମାଜିକ ଓ ଆର୍ଥିକ ନୀତି ନିୟମରେ ବ୍ୟକ୍ତିର ସର୍ବନିମ୍ନ ଆବଶ୍ୟକତା ପୂରଣ ପାଇଁ ପର୍ଯ୍ୟାପ୍ତ ବ୍ୟବସ୍ଥା କରାଯାଇଛି ।

## ୩. ସମାନତାର ଅଧିକାର (Right to Equality) :

ସମାନତା ମାନବ ସମାଜର ଏକ ଆଦର୍ଶ ମୂଲ୍ୟବୋଧ । ସାମାଜିକ ପରିବେଶ ଓ ମନୁଷ୍ୟକୃତ ତାରତମ୍ୟ ଯୋଗୁଁ ବ୍ୟକ୍ତିମାନଙ୍କ ମଧ୍ୟରେ ତାରତମ୍ୟ ସୃଷ୍ଟି ହୋଇଥାଏ । ତଥାପି ଏହି ବୈଷମ୍ୟମୟ ଜଗତରେ ସମାନତାର ଏକ ନିର୍ଦ୍ଦିଷ୍ଟ ମୂଲ୍ୟବୋଧ ରହିଛି ଏବଂ ଇସ୍‌ଲାମ ଏହି ମୂଲ୍ୟବୋଧର ସମ୍ମାନ କରେ । ପ୍ରତ୍ୟେକ ମନୁଷ୍ୟ ଜଣେ ଈଶ୍ୱରଙ୍କ ଦ୍ୱାରା ସୃଷ୍ଟି ଏବଂ ଗୋଟିଏ ମାନବ ପରିବାରର ସଦସ୍ୟ । ମନୁଷ୍ୟ ହିସାବରେ ପୃଥିବୀର ଅନ୍ୟ ଯେକୌଣସି ମଣିଷ ଭଳି ତା'ର ସମାନ ଅଧିକାର ରହିଛି । ଇସ୍‌ଲାମରେ ବଂଶ, ଜାତି, ବର୍ଣ୍ଣ ବା ଭାଷାକୁ ଭିତ୍ତି କରି ମଣିଷ ମଣିଷ ମଧ୍ୟରେ କୌଣସି ପ୍ରଭେଦ ନାହିଁ । କୌଣସି ନିର୍ଦ୍ଦିଷ୍ଟ ବଂଶ ବା ସମ୍ପ୍ରଦାୟରେ ଜନ୍ମଲାଭ କରିବା ମଣିଷର ଆୟତ୍ତାଧୀନ ନୁହେଁ । ଗୋରା ହେବାରେ ତା'ର କିଛି ବାହାଦୁରୀ ନଥାଏ, କିମ୍ବା କଳା ହୋଇଥିଲେ ତା'ର କିଛି ଦୋଷ ନ ଥାଏ । ଈଶ୍ୱରଙ୍କ ଦୃଷ୍ଟିରେ ସମସ୍ତେ ମନୁଷ୍ୟ ଏବଂ ଗୋଟିଏ ପରିବାରର ସଦସ୍ୟ । ତେଣୁ ପବିତ୍ର କୁର୍‌ଆନ କହିଛି :

"ମାନବ ସମାଜ ଗୋଟିଏ ସମ୍ପ୍ରଦାୟ ।"

କୁର୍‌ଆନ ୨ : ୨୧୩

ଜାତିପ୍ରଥା, ବର୍ଣ୍ଣବୈଷମ୍ୟ, ସବର୍ଣ୍ଣ-ଅସବର୍ଣ୍ଣ ଭାବ ଇତ୍ୟାଦି ସମାନତାର ପରିପନ୍ଥୀ । ଜଣେ ବ୍ୟକ୍ତି ଉଚ୍ଚବଂଶୀୟ, ଶ୍ୱେତବର୍ଣ୍ଣ ବା ଧନଶାଳୀ ହୋଇଗଲେ ଈଶ୍ୱରଙ୍କ ପ୍ରିୟ ହୋଇଯିବ ନାହିଁ ବା ତା' ପାଇଁ ସ୍ୱର୍ଗ ସଂରକ୍ଷିତ ହୋଇଯିବ ନାହିଁ । ଅଲ୍ଲାହ୍‌ଙ୍କ ନିକଟରେ ସବୁଠାରୁ ଶ୍ରେଷ୍ଠ ଓ ସମ୍ମାନୀୟ ମଣିଷଟି ସେଇ, ଯିଏ ତାଙ୍କୁ ସର୍ବାଧିକ ଭୟ ଓ ଭକ୍ତି କରେ ଏବଂ ତାଙ୍କର ଆଜ୍ଞା ପାଳନ କରେ । ପବିତ୍ର କୁର୍‌ଆନରେ ଈଶ୍ୱର କହିଛନ୍ତି :

"ହେ ମନୁଷ୍ୟଗଣ ! ଆମ୍ଭେ ତୁମ୍ଭମାନଙ୍କୁ ଜଣେ ପୁରୁଷ ଓ ଜଣେ ସ୍ତ୍ରୀଠାରୁ ସୃଷ୍ଟି କରିଅଛୁ ଏବଂ ତୁମ୍ଭମାନଙ୍କୁ ଅନେକ ରାଷ୍ଟ୍ର ଓ ସମ୍ପ୍ରଦାୟରେ ବିଭକ୍ତ କରିଅଛୁ, ଯେପରିକି ତୁମ୍ଭେମାନେ ପରସ୍ପରକୁ

ଚିହ୍ନିପାରିବ । ଅଲ୍ଲାହ୍‌ଙ୍କ ଦୃଷ୍ଟିରେ ତୁମ ଭିତରେ ସର୍ବାଧିକ ସମ୍ମାନିତ ବ୍ୟକ୍ତି ହେଉଛି ସେହି, ଯିଏ ତୁମ୍ଭମାନଙ୍କ ମଧ୍ୟରେ ସର୍ବାଧିକ ଧର୍ମପ୍ରାଣ । ନିଶ୍ଚିତ ରୂପେ ଅଲ୍ଲାହ୍ ସର୍ବଜ୍ଞ ଓ ସର୍ବଦ୍ରଷ୍ଟା ।''

କୁର୍‌ଆନ ୪୯ : ୧୩

ନିଜର ବିଦାୟୀ ତୀର୍ଥଯାତ୍ରା କାଳରେ ଉପସ୍ଥିତ ଲୋକମାନଙ୍କୁ ସମ୍ବୋଧିତ କରି ମହାମାନ୍ୟ ମୁହମ୍ମଦ କହିଲେ–

''କୌଣସି ଆରବୀୟକୁ ଅଣ-ଆରବୀୟ ଉପରେ କିମ୍ବା ଅଣ-ଆରବୀୟକୁ ଆରବୀୟ ଉପରେ କିମ୍ବା କୌଣସି ଶ୍ୱେତକାୟକୁ କୃଷ୍ଣକାୟ ଉପରେ ବା କୃଷ୍ଣକାୟକୁ ଶ୍ୱେତକାୟ ଉପରେ କୌଣସି ଶ୍ରେଷ୍ଠତା ନାହିଁ । ତୁମେ ସବୁ ଆଦମ୍‌ଙ୍କର ସନ୍ତାନ ଏବଂ ଆଦମ୍‌ଙ୍କୁ ମାଟିରୁ ସୃଷ୍ଟି କରାଯାଇଛି ।''

ଅହମଦ୍

ମହାମାନ୍ୟ ମୁହମ୍ମଦ ଏହା ମଧ୍ୟ ଆଦେଶ ଦେଇଛନ୍ତି–

''ଯଦି ଜଣେ ଭୃତ୍ୟ ତୁମମାନଙ୍କ ଉପରେ (ଶାସକ) ନିଯୁକ୍ତ ହୁଏ ଏବଂ ସେ ଅଲ୍ଲାହ୍‌ଙ୍କ ଗ୍ରନ୍ଥ ଅନୁଯାୟୀ ତୁମମାନଙ୍କର ବ୍ୟାପାର ପରିଚାଳନା କରେ, ତେବେ ତୁମେମାନେ ତା' କଥା ଶୁଣିବା ଉଚିତ୍ ଏବଂ ତା' ଆଦେଶ ମଧ୍ୟ ମାନିବା ଉଚିତ ।''

**ସହୀ ମୁସ୍‌ଲିମ, ୩ୟ ଖଣ୍ଡ, ହଦିସ୍-୪୫୨୮**

ହଜ୍ ସମୟରେ ସାରା ପୃଥିବୀର ବିଭିନ୍ନ ଦେଶ, ବିଭିନ୍ନ ବର୍ଣ୍ଣ, ବିଭିନ୍ନ ବଂଶର ଲୋକେ ସମସ୍ତେ ସମାନ ପ୍ରକାରର ବସ୍ତ୍ର ପିନ୍ଧି କାବାରେ କାନ୍ଧକୁ କାନ୍ଧ ମିଶାଇ ନମାଜ ପାଠ କରନ୍ତି । ସେଇ ଧାଡ଼ିରେ ରାଜା ମଧ୍ୟ ଥାଏ, ଭିକାରୀ ମଧ୍ୟ ଥାଏ । କଳା ଥାଆନ୍ତି ଏବଂ ଗୋରା ମଧ୍ୟ ଥାଆନ୍ତି । ବିଶ୍ୱଭ୍ରାତୃତ୍ୱର ଏହା ଏକ ଆଦର୍ଶ ନମୁନା ।

## ୪. ଆର୍ଥିକ ସୁରକ୍ଷାର ଅଧିକାର (Economic Right)

ଇସ୍‌ଲାମ ମନୁଷ୍ୟର ଧନ-ସମ୍ପତ୍ତିର ମଧ୍ୟ ସଂରକ୍ଷକ । ପ୍ରତ୍ୟେକ ବ୍ୟକ୍ତିର ଆର୍ଥିକ ସୁରକ୍ଷାର ଅଧିକାର ରହିଛି । ତା' ନ୍ୟାର୍ଯ୍ୟ ଅଧିକାରରୁ ତାକୁ ବଞ୍ଚିତ କରାଯାଇ ପାରିବ ନାହିଁ କିମ୍ବା ତା'ର ଧନସମ୍ପତ୍ତିକୁ କୌଣସି ଅସତ୍ ଉପାୟ ଅବଲମ୍ବନ କରି ନିଆଯାଇପାରିବ ନାହିଁ । ମନୁଷ୍ୟର ଏହି ଅଧିକାରର ସୁରକ୍ଷା ପାଇଁ ପରମେଶ୍ୱର ସ୍ପଷ୍ଟ ନୀତି-ନିୟମ ନିର୍ଦ୍ଧାରଣ କରିଛନ୍ତି । ଶୋଷଣ ଓ ଲୁଣ୍ଠନ ଦ୍ୱାରା କାହାରି ଧନ ଆତ୍ମସାତ୍ କରିବାର ସମସ୍ତ ପନ୍ଥାଗୁଡ଼ିକ ଧର୍ମରେ ନିଷିଦ୍ଧ କରାଯାଇଛି । ଏ ସମ୍ପର୍କରେ ପବିତ୍ର କୁର୍‌ଆନ ଆଦେଶ ଦିଏ :

> ''ଏବଂ ତୁମ୍ଭେମାନେ ପରସ୍ପରର ଧନସମ୍ପତ୍ତି ଅସତ୍ ଉପାୟରେ ଆତ୍ମସାତ୍ କରନାହିଁ ।''

କୁର୍‌ଆନ ୨ : ୧୮୮

ବିନା ମଜୁରୀରେ ଶ୍ରମ ଆଦାୟ କରିବା କିମ୍ବା କାହାରି ସାମର୍ଥ୍ୟଠାରୁ ଅଧିକ ଶ୍ରମ ଆଦାୟ କରିବା ମଧ୍ୟ ନିଷେଧ ରହିଛି । ଈଶ୍ୱରଙ୍କର ମହାମାନ୍ୟ ଧର୍ମଦୂତ ସତର୍କ କରି କହିଛନ୍ତି :

> ''ସାବଧାନ ! ଯେ କେହି ଚୁକ୍ତିବଦ୍ଧ ହୋଇଥିବା କୌଣସି ବ୍ୟକ୍ତି ପ୍ରତି ଅନ୍ୟାୟ କରେ ବା ତା' ଅଧିକାର ସଙ୍କୁଚିତ କରେ ବା ତାକୁ ତା' ସାମର୍ଥ୍ୟଠାରୁ ଅଧିକ ପରିଶ୍ରମ କରିବା ପାଇଁ ବାଧ କରେ କିମ୍ବା ତା' ବିନା ଅନୁମତିରେ ତା'ର କୌଣସି ଜିନିଷ ନେଇଯାଏ, ତେବେ ମୁଁ ଅନ୍ତିମ ବିଚାରଦିନ ସେହି ବ୍ୟକ୍ତିର ପକ୍ଷ ସମର୍ଥନ କରିବି ।''

ଅବୁଦାଊଦ୍

ଧର୍ମରେ ଅର୍ଥ ଉପାର୍ଜ୍ଜନର କେବଳ ସେହି ଉପାୟଗୁଡ଼ିକ ବୈଧ ଯେଉଁଥିରେ କାହା ପାଇଁ କୌଣସି ହିତକର କାର୍ଯ୍ୟ ସମ୍ପାଦନ କରି ନ୍ୟାୟସଙ୍ଗତ ଭାବରେ ପାରଶ୍ରମିକ ନିଆଯାଏ । ବ୍ୟକ୍ତି ବା ସମାଜର କୌଣସି ପ୍ରକାରର କ୍ଷତିସାଧନ କରି ଅର୍ଥ-ଉପାର୍ଜ୍ଜନ କରିବାର ସମସ୍ତ ପନ୍ଥା ଏଥିରେ ନିଷିଦ୍ଧ ରହିଛି ।

କୌଣସି ବ୍ୟକ୍ତିକୁ ଆର୍ଥିକ ରୂପେ କ୍ଷତିଗ୍ରସ୍ତ କରି ଅର୍ଥ ଉପାର୍ଜନ କରିବାର ପନ୍ଥା ଯଥା—ଚୋରି, ଡକାୟତି କରିବା+[୧], କାହାରି ଅର୍ଥ ତୋଷାରପାତ କରିବା, ଅନ୍ୟର ଜାଗା-ଜମି ମାଡ଼ି ବସିବା, ମିଥ୍ୟା ମକଦ୍ଦମା କିମ୍ବା ଉତ୍କୋଚ ମାଧ୍ୟମରେ ଅନ୍ୟର ନ୍ୟାର୍ଯ୍ୟ ଅଧିକାର ଛଡ଼ାଇନେବା+[୨] ଆଦି କର୍ମ ଧର୍ମରେ ନିଷିଦ୍ଧ କରାଯାଇଛି । ଛଳ-କପଟ ସାହାଯ୍ୟରେ ପ୍ରତାରିତ କରି ଧନ ଅର୍ଜନ କରିବାର ସମସ୍ତ ଉପାୟ, ଯଥା—ମାପ-ଓଜନରେ ଠକିବା, ଗ୍ରାହକ ସମ୍ମୁଖରେ ମିଥ୍ୟା ରାଣ-ନିୟମ ଖାଇବା, ଅତ୍ୟାବଶ୍ୟକୀୟ ଦ୍ରବ୍ୟର କୃତ୍ରିମ ଅଭାବ ସୃଷ୍ଟି କରି ତାର କଳା-ବଜାରି କରିବା+[୩] କିମ୍ବା କୌଣସି ପଦାର୍ଥରେ ଥିବା ଦୋଷକୁ ଗୋପନ ରଖି ଛଳରେ ତାକୁ ବିକ୍ରି କରିବା, ମିଥ୍ୟା ସାକ୍ଷ୍ୟ ପ୍ରଦାନ କରି ପାରିଶ୍ରମିକ ନେବା ଇତ୍ୟାଦି ନିଷିଦ୍ଧ କରାଯାଇଛି । ମାପ ଓ ଓଜନ ଠିକ୍ ଠିକ୍ କରିବାର ନିର୍ଦ୍ଦେଶ ଦେଇ ଅଲ୍ଲାହ୍ କହିଛନ୍ତି :

"(ହେ ମନୁଷ୍ୟମାନେ !) ମାପପାତ୍ର ଠିକ୍ ଠିକ୍ ପୂର୍ଣ୍ଣ କର ଏବଂ ଅନ୍ୟର କ୍ଷତି କରନାହିଁ ଏବଂ ଠିକ୍ ନିକିତିରେ ଓଜନ କର, ଲୋକମାନଙ୍କୁ ସେମାନଙ୍କର ଜିନିଷ କମ୍ କରି ଦିଅନାହିଁ ଏବଂ ଭୂପୃଷ୍ଠରେ ବିଶୃଙ୍ଖଳା ସୃଷ୍ଟି କରନାହିଁ ।"

କୁର୍‌ଆନ ୨୬ : ୧୮୧-୧୮୩

ସେହିପରି ଜୁଆଖେଳକୁ ନିଷିଦ୍ଧ କରି କୁର୍‌ଆନ କହେ :

"ସେମାନେ ତୁମକୁ ମଦ୍ୟ ଓ ଜୁଆ ବିଷୟରେ ପଚାରୁଛନ୍ତି; କୁହ—ଏଥିରେ ଘୋର ପାପ ଅଛି ଏବଂ ଲୋକମାନଙ୍କୁ ଏଥିରୁ କିଛି ଫାଇଦା ମଧ୍ୟ ହୁଏ; କିନ୍ତୁ ସେଗୁଡ଼ିକର ପାପ (ଓ କ୍ଷତି) ସେଗୁଡ଼ିକର ଲାଭ ଅପେକ୍ଷା ଢେର ଅଧିକ ।"

କୁର୍‌ଆନ ୨ : ୨୧୯

---

+[୧] କୁର୍‌ଆନ ୫ : ୩୮, ସହୀ ବୁଖାରୀ-୮ମ ଖଣ୍ଡ, ହଦିସ୍-୭୯୩

+[୨] କୁର୍‌ଆନ ୨ : ୧୮୮ ଏବଂ ତିରମିଜୀ, ୩ୟ ଖଣ୍ଡ, ହଦିସ୍-୧୩୩୬

+[୩] ତିରମିଜୀ, ୩ୟ ଖଣ୍ଡ, ହଦିସ୍-୧୨୬୭

ଗୋଟିଏ ପକ୍ଷର ସୁନିଶ୍ଚିତ ଲାଭ ଏବଂ ଅନ୍ୟ ପକ୍ଷଟିର ଅନିଶ୍ଚିତ ଲାଭ ହେଉଥିବା ସମସ୍ତ ପ୍ରକାର ବ୍ୟବସାୟ ଧର୍ମରେ ଅବୈଧ ରହିଛି, ଯଥା–ସୁଧ ବ୍ୟବସାୟ । ଏଥିରେ ଋଣଦାତାଙ୍କର ପୁଞ୍ଜି ଏବଂ ଲାଭାଂଶ, ଉଭୟର ଗ୍ୟାରେଣ୍ଟି ଥାଏ । ଅଥଚ ଋଣଗ୍ରହୀତାଙ୍କ ଆୟର କୌଣସି ଗ୍ୟାରେଣ୍ଟି ନ ଥାଏ । ତାଙ୍କୁ ଲାଭ ବା କ୍ଷତି ଉଭୟ ହୋଇପାରେ ।  ଋଣଦାତା ଋଣ ଦେବା ପୂର୍ବରୁ ନିଜ ପାଇଁ ଏକ ନିର୍ଦ୍ଦିଷ୍ଟ ଲାଭାଂଶ ସ୍ଥିର କରାଇନିଅନ୍ତି; ଋଣୀ ବିଚରାକୁ ଲାଭ ହେଉ ବା କ୍ଷତି, ସେଥିପ୍ରତି ସେ ଭ୍ରୂକ୍ଷେପ କରନ୍ତି ନାହିଁ । ଆବଶ୍ୟକ ପଡ଼ିଲେ ଋଣଗ୍ରହିତାର ଘରଦ୍ୱାର ନିଲାମ କରି ମଧ୍ୟ ସେ ନିଜ ଟଙ୍କା ଅସୁଲ କରନ୍ତି । ଋଣଭାରରେ ବୁଡ଼ିଯାଇଥିବା ଅନେକ ଚାଷୀ ଏବଂ ବ୍ୟବସାୟୀମାନଙ୍କୁ ଏହି ଋଣଯନ୍ତା ଆତ୍ମହତ୍ୟା କରିବାକୁ ବାଧ୍ୟ କରେ ।

ଯେଉଁ ବ୍ୟକ୍ତି ନିଜର ଶକ୍ତି, ସାମର୍ଥ୍ୟ ଏବଂ ସମୟ ଖଟାଏ, ତା’ ପାଇଁ ନିଶ୍ଚିତ ଲାଭର କୌଣସି ଗ୍ୟାରେଣ୍ଟି ଦିଆନଯାଉ, ଅଥଚ ଯିଏ କେବଳ ନିଜର ବଳକା ଧନକୁ କରଜ ଦିଏ, ସେ ପ୍ରତି ମାସରେ ଏକ ନିଶ୍ଚିତ ଆୟ କରୁଥାଉ । ଜଣେ ନିଜର ବଳକା ଟଙ୍କାକୁ ଋଣ ଆକାରରେ ଦେଇ କେବଳ ଲାଭରେ ଭାଗୀଦାର ରହୁ, ଅଥଚ କ୍ଷତିର ସମସ୍ତ ବିପଦ ଋଣୀ ମୁଣ୍ଡରେ ପଡୁ । ମାନବିକତା ଦୃଷ୍ଟିକୋଣରୁ ମଧ୍ୟ ଏହା ଏକ ନ୍ୟାୟସଙ୍ଗତ କଥା ନୁହେଁ । ଏହାଛଡ଼ା ସୁଧ ବ୍ୟବସାୟ ଋଣଦାତାର ହୃଦୟକୁ କଠୋର କରିଦିଏ ଏବଂ ତା’ ମଧ୍ୟରେ ଥିବା ସ୍ନେହ, ସହାନୁଭୂତି, ଦୟା, ପରୋପକାର ଆଦି ମାନବୀୟ ଗୁଣଗୁଡ଼ିକୁ ନଷ୍ଟ କରିଦିଏ ।  ବିନା ପଇସାରେ ମଣିଷ ମଣିଷକୁ ଜୀବିତ ରଖିବାକୁ ମଧ୍ୟ ପ୍ରସ୍ତୁତ ହୁଏନାହିଁ । ଅନ୍ୟ ପକ୍ଷରେ ଋଣୀମାନେ ଅନେକ ଆର୍ଥିକ ଓ ମାନସିକ କଷ୍ଟ ଭୋଗ କରନ୍ତି, ଯାହା ଫଳରେ ସେମାନଙ୍କ ହୃଦୟରେ ଋଣଦାତାମାନଙ୍କ ପ୍ରତି କ୍ରୋଧ ଓ ଘୃଣାର ଭାବନା ଜାତ ହୁଏ । ଏହି କାରଣରୁ ଧର୍ମରେ ସୁଧ ବ୍ୟବସାୟକୁ ନିଷିଦ୍ଧ କରାଯାଇଛି । ସୁଧ ବ୍ୟବସାୟୀଙ୍କୁ ସତର୍କ କରି କୁର୍‌ଆନ କହିଛି :

‘‘ଯେଉଁମାନେ ସୁଧ ଖାଆନ୍ତି, ସେମାନେ ଛିଡ଼ା ହେବେ ନାହିଁ;
ମାତ୍ର ସେହି ବ୍ୟକ୍ତିପରି ଯାହାକୁ ଶୈତାନ୍ ତା’ର ସ୍ପର୍ଶ ଦ୍ୱାରା
ପାଗଳ କରିଦେଇଥାଏ । ଏହା ଏଇଥିପାଇଁ ଯେ ସେମାନେ

କହୁଥିଲେ, ବ୍ୟବସାୟ ତ ମଧ୍ୟ ସୁଧ ଭଳି; ଅଥଚ ଅଲ୍ଲାହ୍ ବ୍ୟବସାୟକୁ ବୈଧ କରିଛନ୍ତି ଏବଂ ସୁଧକୁ ଅବୈଧ ।''

କୁର୍‌ଆନ ୨ : ୨୭୫

ବାଇବଲ୍‌ରେ ମଧ୍ୟ ସୁଧ ନିଷିଦ୍ଧ କରାଯାଇଛି । ଏଥିରେ ଉଲ୍ଲେଖ ଅଛି ଯେ, ଈଶ୍ୱର ଆଦେଶ ଦେଇଛନ୍ତି–

''ତୁମ୍ଭେ ଯେବେ ଆମ୍ଭ ଲୋକମାନଙ୍କ ମଧ୍ୟରେ ତୁମ୍ଭର ପ୍ରତିବାସୀ କୌଣସି ଦରିଦ୍ର ଲୋକକୁ ଋଣ ଦିଅ, ତେବେ ତାହା ପ୍ରତି ମହାଜନ ତୁଲ୍ୟ ହେବନାହିଁ ଓ ତାହାଠାରୁ ସୁଧ ନେବନାହିଁ ।''

ବାଇବଲ୍, ଯାତ୍ରା ପୁସ୍ତକ, ୨୨ : ୨୫

ଏହାଛଡ଼ା ଆୟର ସେ ସମସ୍ତ ପନ୍ଥା ଯେଉଁଥିରେ ବହୁ ଲୋକଙ୍କର କ୍ଷତିସାଧନ କରି ଅଳ୍ପ କେତେକ ମୁଷ୍ଟିମେୟ ବ୍ୟକ୍ତି ଲାଭ ଅର୍ଜନ କରନ୍ତି, ଯଥା–ଜୁଆ, ସଟ୍ଟା, ଲଟେରୀ ଇତ୍ୟାଦି ନିଷିଦ୍ଧ କରାଯାଇଛି । ଏହି ପନ୍ଥାରେ ଜନତାଙ୍କୁ ଛଳକପଟରେ ମୋହିତ କରି କିମ୍ବା କୌଣସି ପ୍ରଲୋଭନ ଦେଖାଇ ଧନ ସଂଗ୍ରହ କରାଯାଏ ଏବଂ ଅଳ୍ପ କେତେଜଣଙ୍କୁ ଅନ୍ୟାୟ ଭାବେ ପ୍ରଦାନ କରାଯାଏ, ଯେଉଁଥିପାଇଁ ଧନପ୍ରାପ୍ତ କରିଥିବା ଏହି ବ୍ୟକ୍ତିମାନଙ୍କର କୌଣସି ଅବଦାନ ନ ଥାଏ । ସେମାନଙ୍କୁ ଏଥିପାଇଁ କୌଣସି ସେବା କରିବାକୁ ପଡ଼ିନଥାଏ । ଅନ୍ୟକୁ ଆର୍ଥିକ ରୂପେ କ୍ଷତିଗ୍ରସ୍ତ କରି ଅର୍ଥ ଉପାର୍ଜନ କରିବା ଏକ ଅସାଧୁ ପନ୍ଥା ।

ଏତଦ୍‌ବ୍ୟତୀତ କାହାରି ଚରିତ୍ର ବା ସ୍ୱାସ୍ଥ୍ୟକୁ ନଷ୍ଟ କରି ଧନ ଅର୍ଜନ କରିବାର ସମସ୍ତ ପନ୍ଥା, ଯଥା–ମଦ, ଗଞ୍ଜେଇ ବା ଡ୍ରଗ୍‌ସ ଆଦିର ବ୍ୟବସାୟ, ଅଶ୍ଳୀଳତାର ପ୍ରସାର କରୁଥିବା ସମସ୍ତ ନୃତ୍ୟ-ଗୀତ, ସିନେମା ଏବଂ ପୁସ୍ତକ ଆଦିର ବ୍ୟବସାୟ ଏବଂ ଗଣିକା ବୃତ୍ତି ଆଦି ଇସ୍‌ଲାମରେ ସମ୍ପୂର୍ଣ୍ଣ ଅବୈଧ ଘୋଷଣା କରାଯାଇଛି । ବେଦରେ ମଧ୍ୟ ଜୀବିକାର୍ଜନର ଅନେକ ଅସଦ୍ ଉପାୟର ବର୍ଣ୍ଣନା ରହିଛି :

''ଅନେକ ପ୍ରକାରର ଚୋର ଅଛନ୍ତି । କିଏ ଡାକୁ, କିଏ କପଟରେ ଧନ ହରଣ କରେ, କିଏ ମୋହିତ କରି ଅନ୍ୟର ପଦାର୍ଥ ହରଣ କରେ, କିଏ ରାତିରେ ଦୃଷ୍ଟି ଆଚ୍ଛାଦନ କରି ଭୟ ଦେଖାଇ ଧନ

ନେଇଯାଏ, କିଏ ଉତ୍କୋଚ ଗ୍ରହଣ କରେ, କିଏ ନାନା ପ୍ରକାରର ବ୍ୟବହାରୀ ଦୋକାନରେ ବସି ଛଳ ସହିତ ପଦାର୍ଥ ହରଣ କରେ, କିଏ ଶୁଳ୍କ ଅର୍ଥାତ୍ ଲାଞ୍ଚ ନିଏ, କିଏ ଭୃତ୍ୟ ହୋଇ ସ୍ୱାମୀର ପଦାର୍ଥ ହରଣ କରେ, କିଏ ଛଳକପଟ ଦ୍ୱାରା ଅନ୍ୟର ରାଜ୍ୟକୁ ସ୍ୱୀକାର କରେ, କିଏ ଧର୍ମୋପଦେଶ ଦ୍ୱାରା ମନୁଷ୍ୟମାନଙ୍କୁ ଭ୍ରମ କରି ଗୁରୁ ସାଜି ଶିଷ୍ୟମାନଙ୍କର ପଦାର୍ଥକୁ ହରଣ କରେ, କିଏ ଓକିଲ ହୋଇ ମନୁଷ୍ୟମାନଙ୍କ ବିବାଦ ତୁଟାଇବା ପାଇଁ ଫନ୍ଦିରେ ପକାଇ ପଦାର୍ଥ ହରଣ କରେ ଏବଂ କିଏ ନ୍ୟାୟାସନରେ ବସି ପ୍ରଜାମାନଙ୍କଠାରୁ ଧନ ନେଇ ଅନ୍ୟାୟ କରେ ଇତ୍ୟାଦି । ଏହି ସମସ୍ତଙ୍କୁ ଚୋର ବୋଲି ଜାଣ । ଏମାନଙ୍କୁ ସବୁ ଉପାୟରେ ନିର୍ମୂଳ ବା ନିଃଶେଷ କରି ମନୁଷ୍ୟମାନେ ଧର୍ମ ଦ୍ୱାରା ରାଜ୍ୟ ପାଳନ କରିବା ଉଚିତ୍ ।''

ରଗ୍‌ବେଦ, ପ୍ରଥମ ମଣ୍ଡଳ, ସୂକ୍ତ-୪୨, ଶ୍ଳୋକ-୩

ଈଶ୍ୱରଙ୍କ ଧର୍ମଦୂତ ସଚେତନ କରିଯାଇଛନ୍ତି—

''ଯେଉଁ ଶରୀର ଅବୈଧ ଧନ ଦ୍ୱାରା ପ୍ରତିପାଳିତ ହୋଇଥାଏ, ସେ ବୈକୁଣ୍ଠରେ ପ୍ରବେଶ କରିବ ନାହିଁ ।''

ଅହମଦ

ଧନ ଖର୍ଚ୍ଚ କରିବା ଉପରେ ମଧ୍ୟ ଇସ୍‌ଲାମ ଅଙ୍କୁଶ ପ୍ରୟୋଗ କରିଛି । ମନୁଷ୍ୟକୁ ଭୋଗବିଳାସ ଏବଂ ଅପବ୍ୟୟରୁ ନିବୃତ୍ତ ରହିବାକୁ ଆଦେଶ ଦିଆଯାଇଛି । ବଳକା ଅର୍ଥକୁ କୌଣସି ସତ୍‌କାର୍ଯରେ ବ୍ୟବହାର ନ କରି ଅଯଥା ଜମା କରି ରଖିବା ମଧ୍ୟ ଧର୍ମ ପସନ୍ଦ କରେନାହିଁ । ଇସ୍‌ଲାମ ମଣିଷକୁ ହୃଦୟଙ୍ଗମ କରାଇବାକୁ ଚାହେଁ ଯେ, ତୁମ ନିକଟରେ ଅଯଥା ପଡ଼ି ରହିଥିବା ଅର୍ଥ କାହାରି ଜୀବନରକ୍ଷା କରିପାରି ଥାଆନ୍ତା, କୌଣସି କ୍ଷୁଧାର୍ଥର କ୍ଷୁଧା ନିବାରଣ କରିପାରି ଥାଆନ୍ତା, ଆବଶ୍ୟକତାଠାରୁ ଅଧିକ ତୁମର ଭବ୍ୟ ଅଟ୍ଟାଳିକା କେତେ ଦୁଃଖୀରଙ୍କିଙ୍କର ଲୁହ ପୋଛିପାରନ୍ତା, ତୁମ ବେକରେ ଶୋଭା ପାଉଥିବା ସୁନା କେତେ ରୋଗୀଙ୍କର ଔଷଧ ହୋଇପାରନ୍ତା ଏବଂ ତୁମ ଶୌଚାଳୟରେ ଲାଗିଥିବା ମୂଲ୍ୟବାନ୍ ଟାଇଲ୍ କେତେ ଭୋକିଲାଙ୍କ ରୁଟି ହୋଇପାରନ୍ତା । ଏଣୁ ଈଶ୍ୱରଙ୍କ

ଦ୍ୱାରା ପ୍ରଦାନ କରାଯାଇଥିବା ଅର୍ଥକୁ ଈଶ୍ୱରଙ୍କ ପ୍ରସନ୍ନତା ପାଇଁ ଖର୍ଚ୍ଚ କର । ସେ କେବେହେଲେ ତୁମ ସତ୍‌କର୍ମକୁ ଅକାରଣ କରିଦେବେ ନାହିଁ । ଜଣେ ବ୍ୟକ୍ତି କେତେ ଖର୍ଚ୍ଚ କରିବା ଉଚିତ୍ ଏହାର ଉତ୍ତର ଦେଇ ପବିତ୍ର କୁର୍‌ଆନ କହିଛି :

"ଆଉ ସେମାନେ ତୁମକୁ ପଚାରୁଛନ୍ତି ଯେ, ସେମାନେ କେତେ ଖର୍ଚ୍ଚ କରିବେ । ତୁମେ କୁହ—ଯାହାକିଛି ତୁମ ପ୍ରୟୋଜନଠାରୁ ବଳକା ରହେ ।"

କୁର୍‌ଆନ ୨ : ୨୧୯

ଇସ୍‌ଲାମ ବ୍ୟକ୍ତିର ସମ୍ପତ୍ତିଗତ ଅଧିକାରକୁ ଏଭଳି ମାନ୍ୟତା ପ୍ରଦାନ କରିଛି ଯେ, ଯଦି ଜଣେ ମୁସଲମାନ କାହାଠାରୁ ଋଣ କରିଥିବା ଅବସ୍ଥାରେ ମରିଯାଏ, ତେବେ ସେହି ଋଣ ପରିଶୋଧର ଦାୟିତ୍ୱ ତା'ର କୌଣସି ଉତ୍ତରାଧିକାରୀ ନ ନେବା ପର୍ଯ୍ୟନ୍ତ ଇସ୍‌ଲାମ ସେହି ମୃତବ୍ୟକ୍ତିର ମୋକ୍ଷ ପାଇଁ ସାମୂହିକ ପ୍ରାର୍ଥନା (ଜନାଜା)ର ଅନୁମତି ଦିଏନାହିଁ । ଇସ୍‌ଲାମର ଅର୍ଥନୈତିକ ବ୍ୟବସ୍ଥାକୁ ଅନୁଧ୍ୟାନ କଲେ ସହଜରେ ଜାଣିହେବ ଯେ, ବ୍ୟକ୍ତିର ଆର୍ଥିକ ସୁରକ୍ଷା ତଥା ସମାଜର ଆର୍ଥିକ ସନ୍ତୁଳନ ରକ୍ଷା କରିବା କ୍ଷେତ୍ରରେ ଏହା ଏକ ଅନୁପମ ବ୍ୟବସ୍ଥା ।

### ୫. ସମ୍ମାନଗତ ଅଧିକାର (Right to Dignity)



ସମାଜରେ ଏକ ସମ୍ମାନଜନକ ଜୀବନଯାପନ କରିବାର ପ୍ରତ୍ୟେକ ବ୍ୟକ୍ତିର ଅଧିକାର ରହିଛି । ସମସ୍ତଙ୍କ ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିବା ଏବଂ କାହାରି ମାନ-ମହତ କ୍ଷୁର୍ଣ୍ଣ ହେଲାଭଳି କୌଣସି କାର୍ଯ୍ୟ ନ କରିବାର ଇସ୍‌ଲାମ ଶିକ୍ଷା ଦେଇଛି । ଗୁରୁଜନମାନଙ୍କୁ ଭକ୍ତି କରିବା ଓ ସାନମାନଙ୍କୁ ସ୍ନେହ ଆଦର କରିବା ସହ ସମସ୍ତଙ୍କ ସହିତ ମଧୁର ବ୍ୟବହାର କରିବା ଉଚିତ । କେବଳ ବୟସ ଦୃଷ୍ଟିରୁ ମଧ୍ୟ ଜଣେ ବ୍ୟକ୍ତିକୁ ସମ୍ମାନ ଦେବା ଉଚିତ୍ ବୋଲି ବର୍ଣ୍ଣନା କରି ଅଲ୍ଲାହ୍‌ଙ୍କର ଧର୍ମଦୂତ ମହାମାନ୍ୟ ମୁହମ୍ମଦ କହିଛନ୍ତି :

"ଯଦି ଜଣେ ଯୁବକ କୌଣସି ବୟୋଜ୍ୟେଷ୍ଠ ବ୍ୟକ୍ତି ପ୍ରତି ତା' ବୟସ ଦୃଷ୍ଟିରୁ ସମ୍ମାନ ପ୍ରଦର୍ଶନ କରେ, ଅଲ୍ଲାହ୍ (ତା' ପାଇଁ) କୌଣସି ବ୍ୟକ୍ତିକୁ ନିଯୁକ୍ତ କରିବେ ଯିଏ ବୃଦ୍ଧାବସ୍ଥାରେ ତା'ର ସମ୍ମାନ କରିବ ।"

ତିର୍‌ମିଜୀ, ୪ର୍ଥ ଖଣ୍ଡ, ହଦିସ୍-୨୦୨୨

କାହା ମାନ-ସମ୍ମାନ କ୍ଷୁର୍ଣ୍ଣ କଲାଭଳି ସମସ୍ତ ଆଚରଣ ଯଥା—କୌଣସି ପୁରୁଷ ବା ମହିଳା ପ୍ରତି ଅପମାନଜନକ ମନ୍ତବ୍ୟ ଦେବା, ପରନିନ୍ଦା କରିବା, କାହାରି ନାମକୁ ବିକୃତ କରି ଡାକିବା କିମ୍ବା ତୁଚ୍ଛ ମନେକରି କାହାରି ଉପହାସ କରିବା ଇତ୍ୟାଦି ଇସ୍‌ଲାମରେ ନିଷିଦ୍ଧ କରାଯାଇଛି । ପବିତ୍ର କୁର୍‌ଆନ ଆଦେଶ ଦେଇଛି :

"ହେ ବିଶ୍ୱାସକାରୀମାନେ ! ପୁରୁଷମାନେ ଅନ୍ୟ ପୁରୁଷଙ୍କ ପ୍ରତି (ହେୟ ମନେକରି) ବ୍ୟଙ୍ଗ ନ କରନ୍ତୁ, ସମ୍ଭବତଃ ସେମାନେ ଏମାନଙ୍କ ଅପେକ୍ଷା ଭଲ ହୋଇପାରନ୍ତି; କିମ୍ବା ସ୍ତ୍ରୀଲୋକମାନେ ଅନ୍ୟ ସ୍ତ୍ରୀଲୋକଙ୍କ ପ୍ରତି ବ୍ୟଙ୍ଗ ନ କରନ୍ତୁ, ସମ୍ଭବତଃ ସେମାନେ ଏମାନଙ୍କ ଅପେକ୍ଷା ଉତ୍କୃଷ୍ଟ ହୋଇଥାଇ ପାରନ୍ତି; ଏବଂ ତୁମ୍ଭେମାନେ ପରସ୍ପର ପ୍ରତି କଟୁ ମନ୍ତବ୍ୟ ଦିଅନାହିଁ କିମ୍ବା ଜଣେ ଅନ୍ୟ ଜଣକୁ ବିଦ୍ରୂପାତ୍ମକ ନାମରେ ଡାକ ନାହିଁ । ବିଶ୍ୱାସ ସ୍ଥାପନ କରିବା ପରେ ପାପ ନାଁ (ଧରିବା) ହିଁ ଖରାପ । ଏବଂ ଯେଉଁମାନେ ଏଭଳି ଆଚରଣରୁ ବିରତ ନ ହୁଅନ୍ତି, ସେମାନେ ଅତ୍ୟାଚାରୀ ।"

କୁର୍‌ଆନ ୪୯ : ୧୧

ନିଜର ଅନ୍ତିମ ହଜ୍ କାଳରେ ମହାମାନ୍ୟ ଧର୍ମଦୂତ ମୁହମ୍ମଦ ସେଠାରେ ଉପସ୍ଥିତ ଲକ୍ଷାଧିକ ଜନତାଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ—

"ତୁମେମାନେ ପରସ୍ପରର ଧନ-ଜୀବନ ଓ ମାନ-ସମ୍ମାନର ପବିତ୍ରତା ପ୍ରତି ସମ୍ମାନ ପ୍ରଦର୍ଶନ କରିବ ଯେପରି ତୁମେମାନେ ଆଜିର ଏହି ଦିନ ଏବଂ ଏହି ସହର ପ୍ରତି ସମ୍ମାନ ପ୍ରଦର୍ଶନ କରୁଅଛ ।"

ତିରମିଜୀ, ୪ର୍ଥ ଖଣ୍ଡ, ହଦିସ୍-୨୧୫୯

ଇସ୍‌ଲାମ ବ୍ୟକ୍ତିକୁ ଏକାନ୍ତତାର ଅଧିକାର ମଧ୍ୟ ପ୍ରଦାନ କରିଛି । କାହାରି ଏକାନ୍ତତାରେ ମନମୁଖୀ ହସ୍ତକ୍ଷେପ କରାଯାଇ ପାରିବ ନାହିଁ । କୌଣସି ବ୍ୟକ୍ତିର ଘର ଭିତରକୁ ବିନା ଅନୁମତିରେ ପ୍ରବେଶ କରିବାକୁ ବାରଣ କରି କୁର୍‌ଆନ କହିଛି :

"ହେ ବିଶ୍ୱାସକାରୀମାନେ ! ନିଜ ଘରଛଡ଼ା ଅନ୍ୟମାନଙ୍କ ଘରେ ସେତେବେଳ ପର୍ଯ୍ୟନ୍ତ ପ୍ରବେଶ କରନା ଯେତେବେଳ ଯାଏ ଗୃହସ୍ଥଙ୍କ ଅନୁମତି ନ ନେଇଛ ଏବଂ ଗୃହବାସୀମାନଙ୍କୁ ସଲାମ (ଶୁଭେଚ୍ଛା) ନ ଜଣାଇଛ ।"

କୁର୍ଆନ ୨୪ : ୨୭

ନାରୀ ସଦା ସମ୍ମାନୀୟା । କୌଣସି ମହିଳା ପ୍ରତି ଅସମ୍ମାନଜନକ ଆଚରଣ ପ୍ରଦର୍ଶନ କରିବା ବା ମିଥ୍ୟା କଳଙ୍କ ଲଗାଇବା ଧର୍ମରେ ଏକ ଗର୍ହିତ ଅପରାଧ । ଯେହେତୁ ନାରୀର ପବିତ୍ରତା ଏବଂ ମାନମର୍ଯ୍ୟାଦା ସମ୍ମାନୀୟ, ତେଣୁ ଇସ୍‌ଲାମ ଏହାର ସୁରକ୍ଷା ପାଇଁ ବିହିତ ବ୍ୟବସ୍ଥା କରିଛି ।

ପରିବାର ହେଉଛି ସମାଜର ଭିତ୍ତିଭୂମି । ପରିବାର ସୁସ୍ଥ ରହିଲେ ସମାଜ ସୁସ୍ଥ ରହେ । ନାରୀ ଓ ପୁରୁଷ ବିବାହ ବନ୍ଧନର ପବିତ୍ରତା ରକ୍ଷା କଲେ ହିଁ ସମାଜର ପବିତ୍ରତା ବଜାୟ ରହେ । ତେଣୁ ପୁରୁଷ ଓ ନାରୀମାନଙ୍କର ନୈତିକ ସୁରକ୍ଷା ପାଇଁ ଏବଂ ସମାଜକୁ ବିଭିନ୍ନ ବିଶୃଙ୍ଖଳାରୁ ରକ୍ଷା କରିବା ପାଇଁ ଇସ୍‌ଲାମରେ ବ୍ୟଭିଚାରକୁ ନିଷିଦ୍ଧ କରାଯାଇଛି । କେବଳ ବଳାତ୍କାର ନୁହେଁ, ପାରସ୍ପରିକ ସହମତି କ୍ରମେ ହେଉଥିବା ବିବାହ ବନ୍ଧନ ବର୍ହିଭୂତ ଶାରୀରିକ ସମ୍ପର୍କ ମଧ୍ୟ ବ୍ୟଭିଚାର, ଯାହାକୁ ଧର୍ମରେ ଏକ ସଙ୍ଗୀନ ଅପରାଧର ଆଖ୍ୟା ଦିଆଯାଇଛି ଏବଂ ତା' ପାଇଁ କଠୋର ଦଣ୍ଡ ବ୍ୟବସ୍ଥା ମଧ୍ୟ କରାଯାଇଛି । ପବିତ୍ର କୁର୍ଆନ କହେ :

"ବ୍ୟଭିଚାରର ନିକଟବର୍ତ୍ତୀ (ମଧ୍ୟ) ହୁଅନାହିଁ । ବାସ୍ତବରେ ଏହା ଅଶ୍ଳୀଳତା ଏବଂ ଅତିଶୟ ମନ୍ଦ ମାର୍ଗ ।"

କୁର୍ଆନ ୧୭ : ୩୨

ଅଶ୍ଳୀଳତାର ସମସ୍ତ ସ୍ୱରୂପଗୁଡ଼ିକ ଧର୍ମରେ ନିଷିଦ୍ଧ ରହିଛି । ପବିତ୍ର କୁର୍ଆନ କହେ :

"ଅଶ୍ଳୀଳତାର ପାଖ ମାଡ଼ ନାହିଁ, (ତାହା) ପ୍ରକାଶ୍ୟରେ ହେଉ ବା ଗୋପନରେ ।"

କୁର୍ଆନ ୬ : ୧୫୧

## ୬. ନ୍ୟାୟଗତ ଅଧିକାର (Right to Justice)

ସମସ୍ତେ ମନୁଷ୍ୟ । ଜାତି-ଧର୍ମ-ବର୍ଣ୍ଣ-ଲିଙ୍ଗ ନିର୍ବିଶେଷରେ ସମସ୍ତଙ୍କର ଉଚିତ ନ୍ୟାୟ ପାଇବାର ଅଧିକାର ରହିଛି । ଇସ୍‌ଲାମ ଏହି ମୂଲ୍ୟବୋଧର ସମ୍ମାନ କରେ । ମୁସଲମାନ ହୁଅନ୍ତୁ ବା ଅଣ-ମୁସଲମାନ, ଶତ୍ରୁ ହୁଅନ୍ତୁ ବା ମିତ୍ର, ନ୍ୟାୟ ଦୃଷ୍ଟିରେ ସମସ୍ତେ ସମାନ ଏବଂ ଇସ୍‌ଲାମ ବିନା ପକ୍ଷପାତରେ ସମସ୍ତଙ୍କ ପ୍ରତି ଉଚିତ ନ୍ୟାୟ କରିବାର ଆଦେଶ ଦେଇଛି । ଧର୍ମଦୂତ ମୁହମ୍ମଦ ମଦିନାର ପ୍ରଥମ ଓ ମୁଖ୍ୟ ବିଚାରପତି ଥିଲେ ଏବଂ ତାଙ୍କୁ ଜାତି-ଧର୍ମ ନିର୍ବିଶେଷରେ ସମସ୍ତଙ୍କ ପ୍ରତି ଉଚିତ ନ୍ୟାୟ କରିବାର ଆଦେଶ ଦିଆଯାଇଥିଲା :

> ''ଏବଂ (ସେମାନଙ୍କୁ) କୁହ—ଅଲ୍ଲାହ୍ ଯେଉଁ ଗ୍ରନ୍ଥ ଅବତୀର୍ଣ୍ଣ କରିଛନ୍ତି ମୁଁ ତାହା ବିଶ୍ୱାସ କରେ ଏବଂ ମୋତେ ଆଦେଶ ଦିଆଯାଇଛି ଯେ ମୁଁ ତୁମ୍ଭମାନଙ୍କ ମଧ୍ୟରେ ନ୍ୟାୟ ବିଚାର କରିବି ।''
>
> କୁର୍‌ଆନ ୪୨ : ୧୫

ନ୍ୟାୟରେ ଧନୀ-ଦରିଦ୍ରର ପକ୍ଷପାତ ନାହିଁ । ଯଦି ନ୍ୟାୟ ନିଜ ସ୍ୱାର୍ଥ ବିରୁଦ୍ଧରେ ବା ପିତା-ମାତା କିମ୍ବା ଅନ୍ୟ ସମ୍ପର୍କୀୟଙ୍କ ବିରୁଦ୍ଧରେ ଯାଏ, ତଥାପି ନ୍ୟାୟରୁ ବିଚ୍ୟୁତ ହେବା ଉଚିତ ନୁହେଁ । ପବିତ୍ର କୁର୍‌ଆନ ଏହି ଆଦେଶ ଦେଇ କହିଛି :

> ''ହେ ବିଶ୍ୱାସକାରୀମାନେ ! ନ୍ୟାୟ ବିଚାରରେ ସମ୍ପୂର୍ଣ୍ଣ ଭାବରେ ଦୃଢ଼ ରୁହ ଓ ଅଲ୍ଲାହ୍‌ଙ୍କ ପ୍ରସନ୍ନତା ନିମନ୍ତେ (ସତ୍ୟ) ସାକ୍ଷ୍ୟ ପ୍ରଦାନକାରୀ ହୁଅ, ଯଦିଚ ଏହା ତୁମ ନିଜ ବିରୁଦ୍ଧରେ ହେଉ ବା ତୁମ ପିତାମାତା ଓ ଆତ୍ମୀୟସ୍ୱଜନଙ୍କ ବିରୁଦ୍ଧରେ ହେଉ, ଏବଂ ଯଦି ସେ (ପକ୍ଷଦ୍ୱୟ) ଧନୀ ବା ଦରିଦ୍ର, ତେବେ ଅଲ୍ଲାହ୍ (ତୁମ୍ଭମାନଙ୍କଠାରୁ ବଳି) ସେମାନଙ୍କର ହିତାକାଂକ୍ଷୀ । ସୁତରାଂ ନିଜର କାମନା-ବାସନାର ଅନୁସରଣ କରି ନ୍ୟାୟ ବିଚାରରୁ ବିରତ ହୁଅନାହିଁ । ଏବଂ ଯଦି ତୁମେ (ପ୍ରକୃତ ଘଟଣାକୁ) ଲୁଚାଇଲ ବା ପକ୍ଷପାତ କଲ, ତେବେ ଜାଣିରଖ ତୁମେ ଯାହାକିଛି କରୁଛ, ଅଲ୍ଲାହ୍ ସେ ବିଷୟରେ ଭଲରୂପେ ଅବଗତ ଅଛନ୍ତି ।''
>
> କୁର୍‌ଆନ ୪ : ୧୩୫

ଏହାଛଡ଼ା ଶତ୍ରୁମାନଙ୍କ ପ୍ରତି ମଧ୍ୟ ଅନ୍ୟାୟ କରିବାକୁ ଇସ୍‌ଲାମ ବାରଣ କରିଛି :

"ହେ ବିଶ୍ୱାସକାରୀମାନେ ! ତୁମ୍ଭେମାନେ ଅଲ୍ଲାହ୍‌ଙ୍କ (ପ୍ରସନ୍ନତା) ପାଇଁ ନ୍ୟାୟପରାୟଣତା ଉପରେ ଅଟଳ ରୁହ ଏବଂ ନ୍ୟାୟସଙ୍ଗତ ଭାବରେ ସାକ୍ଷ୍ୟ ଦିଅ । କୌଣସି ସମ୍ପ୍ରଦାୟର ଶତ୍ରୁତା ତୁମମାନଙ୍କୁ ଏପରି ଉତ୍ତେଜିତ ନ କରୁ ଯେ, ତୁମେ ନ୍ୟାୟ ବିଚାରରୁ ବିଚ୍ୟୁତ ହୋଇଯାଅ ।"

କୁର୍‌ଆନ ୫ : ୮

ନ୍ୟାୟର ପ୍ରତିଷ୍ଠା ପାଇଁ ଧର୍ମରେ କଠୋର ନିୟମ ନିର୍ଦ୍ଧାରଣ କରାଯାଇଛି । ବିଚାର ପ୍ରକ୍ରିୟାକୁ ପ୍ରଭାବିତ କରି କାହାରିକୁ ନ୍ୟାୟରୁ ବଞ୍ଚିତ କରିବାର ସମସ୍ତ ପନ୍ଥା ଇସ୍‌ଲାମରେ ନିଷିଦ୍ଧ ରହିଛି । ଲାଞ୍ଚ, ମିଥ୍ୟା ସାକ୍ଷ୍ୟ ଓ ପକ୍ଷପାତିତା ଆଦି ନିଷିଦ୍ଧ । ରାଷ୍ଟ୍ରମୁଖ୍ୟଙ୍କୁ ମଧ୍ୟ କାଠଗଡ଼ାରେ ଆବଶ୍ୟକ ହେଲେ ଛିଡ଼ା ହେବାକୁ ପଡ଼େ ଏବଂ ଆଇନ୍ ଦୃଷ୍ଟିରୁ ତାଙ୍କୁ ସାଧାରଣ ନାଗରିକ ବିବେଚିତ କରାଯାଏ ।

ହଜରତ ଅଲି ଇସ୍‌ଲାମିକ ରାଷ୍ଟ୍ରର ଚତୁର୍ଥ ଖଲିଫା (ରାଷ୍ଟ୍ରମୁଖ୍ୟ) ଥାଆନ୍ତି । ଜଣେ ୟହୁଦି ବ୍ୟକ୍ତି ତାଙ୍କ ସାଞ୍ଜୁ ଚୋରି କରି ନେଇଥିଲା । ତେଣୁ ହଜରତ୍ ଅଲି ସେହି ବ୍ୟକ୍ତି ବିରୁଦ୍ଧରେ ଅଦାଲତରେ ମକଦ୍ଦମା କଲେ ଏବଂ ସେଥିପାଇଁ ତାଙ୍କୁ ଅଦାଲତର କାଠଗଡ଼ାରେ ଛିଡ଼ାହେବାକୁ ମଧ୍ୟ ପଡ଼ିଲା । ସେ ନିଜ ବକ୍ତବ୍ୟ ସପକ୍ଷରେ ନିଜର ବଡ଼ପୁଅ ହଜରତ ହସନ୍‌ଙ୍କୁ ସାକ୍ଷୀ ଭାବରେ ଉପସ୍ଥାପିତ କଲେ, କାରଣ ତାଙ୍କ ନିକଟରେ ଅନ୍ୟ ସାକ୍ଷୀ କେହି ନ ଥିଲେ । କିନ୍ତୁ ଅଭିଯୋଗକାରୀଙ୍କ ସହ ସାକ୍ଷୀର ନିକଟ ସମ୍ପର୍କ ହୋଇଥିବାରୁ ହଜରତ ହସନ୍‌ଙ୍କ ସାକ୍ଷ୍ୟ ଗ୍ରହଣଯୋଗ୍ୟ ନୁହେଁ ବୋଲି କହି ଜଜ୍ ମକଦ୍ଦମା ଖାରଜ କରିଦେଲେ । ଏହି ଘଟଣାରୁ ପ୍ରତିବାଦୀଙ୍କ ଉପରେ ଏଭଳି ପ୍ରଭାବ ପଡ଼ିଲା ଯେ, ସେ କୋର୍ଟ ପରିସରରୁ ବାହାରିବା ସଙ୍ଗେ ସଙ୍ଗେ ନିଜ ଭୁଲ୍ ସ୍ୱୀକାର କରିନେଲେ ।

ଆଉ ଗୋଟିଏ ଘଟଣା ହେଉଛି ଦ୍ୱିତୀୟ ଖଲିଫା ହଜରତ୍ ଉମରଙ୍କର । ସେ ଥରେ ପ୍ରତିବାଦୀ ରୂପେ କୋର୍ଟରେ ଉପସ୍ଥିତ ହେଲେ । ତାଙ୍କ ସମ୍ମାନାର୍ଥେ ବିଚାରପତି ନିଜ ଆସନ ଛାଡ଼ି ଠିଆ ହୋଇଗଲେ । ହଜରତ ଉମର କହିଲେ

ଯେ, ସେ ରାଷ୍ଟ୍ରମୁଖ୍ୟ ହିସାବରେ ନୁହେଁ, ବରଂ ଜଣେ ସାଧାରଣ ନାଗରିକ ହିସାବରେ ବିଚାରାଳୟକୁ ଆସିଛନ୍ତି ଏବଂ ଆସନରୁ ଉଠି ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବା (ଯାହାକି ଅନ୍ୟ ନାଗରିକମାନଙ୍କ ପାଇଁ କରାଯାଏ ନାହିଁ) ବିଚାରପତିଙ୍କ ଆସନର ଅପମାନ । ତେଣୁ ସେ ନିଷ୍ପତ୍ତି କଲେ ଯେ, ଏହାଦ୍ୱାରା ବିଚାରପତି ପକ୍ଷପାତ କରି ନିଜର କର୍ତ୍ତବ୍ୟ ବିରୋଧୀ କାର୍ଯ୍ୟ କରିଛନ୍ତି । ତେଣୁ ସେ ବିଚାରକାର୍ଯ୍ୟ କରିବା ପାଇଁ ଉପଯୁକ୍ତ ନୁହଁନ୍ତି ।

ନ୍ୟାୟ ଦୃଷ୍ଟିରେ ସମସ୍ତେ ସମାନ ଏବଂ ବିନା ପକ୍ଷପାତରେ ସମସ୍ତଙ୍କୁ ନ୍ୟାୟଗତ ସୁରକ୍ଷା ମିଳିବା ଉଚିତ ।

## ୭. ଧର୍ମଗତ ସ୍ୱାଧିନତାର ଅଧିକାର (Right to Freedom of Religion)

ସ୍ୱଇଚ୍ଛାରେ ନିଜ ପାଇଁ ଧର୍ମମାର୍ଗ ବାଛିବାର ଅଧିକାର ପ୍ରତ୍ୟେକ ମନୁଷ୍ୟର ରହିଛି । ଇସ୍‌ଲାମରେ ସମସ୍ତଙ୍କର ଧର୍ମଗ୍ରହଣ ଓ ଧର୍ମପାଳନର ସ୍ୱାଧିନତା ଅଛି ।

ଈଶ୍ୱର ମନୁଷ୍ୟକୁ କର୍ମ କରିବା ପାଇଁ ଶକ୍ତି ପ୍ରଦାନ କରିଛନ୍ତି । ଯଦି ସେ ଆମ ହାତ, ଗୋଡ଼, ଆଖି, କାନ ବା ମସ୍ତିଷ୍କ ଆଦିକୁ ଶକ୍ତି ଓ ସାମର୍ଥ୍ୟ ପ୍ରଦାନ କରିନଥାଆନ୍ତେ, ତେବେ କୌଣସି କାର୍ଯ୍ୟ କରିବା ଆମ ପକ୍ଷରେ ସମ୍ଭବ ହୁଅନ୍ତା ନାହିଁ । ଏଥିସହିତ ଈଶ୍ୱର ସମସ୍ତଙ୍କୁ ବିଚାରବୁଦ୍ଧି ଏବଂ ଆତ୍ମ ନିୟନ୍ତ୍ରଣର ଶକ୍ତି ପ୍ରଦାନ କରିଛନ୍ତି । କିନ୍ତୁ କୌଣସି କର୍ମ କରିବା ବା ନ କରିବାର ନିର୍ଣ୍ଣୟ ମନୁଷ୍ୟ ନିଜେ କରେ ଏବଂ ସେଇ ଅନୁସାରେ ତାକୁ କର୍ମଫଳ ମଧ୍ୟ ଭୋଗ କରିବାକୁ ପଡ଼େ । ଈଶ୍ୱର ତାକୁ ବାଧ୍ୟ କରନ୍ତି ନାହିଁ । ଯଦି କେହି ସତ୍‌ପଥରେ ଚାଲିବାର ନିର୍ଣ୍ଣୟ ନିଏ, ତାକୁ ସେ ବିପଥଗାମୀ କରନ୍ତି ନାହିଁ କିମ୍ବା ଯଦି ସେ ଅସତ୍‌ପଥ ବାଛେ, ତାକୁ ବାଧ୍ୟ କରି ସତ୍‌ପଥଗାମୀ କରାଯାଏ ନାହିଁ । ଉଦାହରଣ ସ୍ୱରୂପ ଈଶ୍ୱର ହିଁ ସଭିଙ୍କୁ ଆହାର ଦିଅନ୍ତି, କିନ୍ତୁ ସେହି ମାଧ୍ୟମରେ ଦିଅନ୍ତି ଯାହାକୁ ବ୍ୟକ୍ତି ନିଜେ ବାଛିଥାଏ । ଚୋରି ବା ବ୍ୟବସାୟ ମଧ୍ୟରୁ ଯଦି ବ୍ୟକ୍ତି ବ୍ୟବସାୟ ପନ୍ଥା ଗ୍ରହଣ କରିବାର ନିର୍ଣ୍ଣୟ ନିଏ, ଈଶ୍ୱର ତାକୁ ବଳପୂର୍ବକ ଚୋର କାହିଁକି କରିବେ ? ଈଶ୍ୱର ଇଚ୍ଛା କରିଥିଲେ ସୂର୍ଯ୍ୟ, ଚନ୍ଦ୍ର ପରି ମନୁଷ୍ୟ ମଧ୍ୟ ତାଙ୍କର ଅବାଧ୍ୟ ହୋଇପାରି ନଥାଆନ୍ତା । ତେଣୁ କାହାରିକୁ ଧର୍ମଗ୍ରହଣ ପାଇଁ ବାଧ୍ୟ ନ କରିବାର ଉପଦେଶ ଦେଇ ପବିତ୍ର କୁର୍‌ଆନରେ ଈଶ୍ୱର କହିଛନ୍ତି :

''ଏବଂ ଯଦି ତୁମ ପାଳନକର୍ତ୍ତା ଇଚ୍ଛା କରିଥାଆନ୍ତେ, ତେବେ ପୃଥିବୀର ସମସ୍ତ ଅଧିବାସୀ ନିଶ୍ଚୟ ବିଶ୍ୱାସ ସ୍ଥାପନ କରିଥାଆନ୍ତେ । ତା'ହେଲେ କ'ଣ (ହେ ମୁହମ୍ମଦ) ତୁମ୍ଭେ ଲୋକମାନଙ୍କୁ ବିଶ୍ୱାସ କରିବା ପାଇଁ ବାଧ କରିବ ?''

କୁର୍‌ଆନ - ୧୦ : ୯୯

ଯେହେତୁ ଈଶ୍ୱର ବ୍ୟକ୍ତିର ବୁଦ୍ଧି, ପ୍ରେମ ଓ ଭକ୍ତିର ପରୀକ୍ଷା ନିଅନ୍ତି, କୌଣସି କର୍ମ ପାଇଁ ବାଧ କଲେ ଏହି ପରୀକ୍ଷାର ଉଦ୍ଦେଶ୍ୟ ସାଧନ ହେବନାହିଁ । ପବିତ୍ର କୁର୍‌ଆନ କହିଛି :

''ତୁମ୍ଭମାନଙ୍କ ମଧ୍ୟରୁ କିଏ ଉତ୍ତମ କାର୍ଯ୍ୟ କରୁଛି, ତାହା ପରୀକ୍ଷା କରିବା ନିମନ୍ତେ ସେ (ଅଲ୍ଲାହ୍) ମୃତ୍ୟୁ ଓ ଜୀବନକୁ ସୃଷ୍ଟି କରିଛନ୍ତି; ଆଉ ସେ ପ୍ରବଳ ପରାକ୍ରମୀ ଏବଂ ଅତୀବ କ୍ଷମାଶୀଳ ।''

କୁର୍‌ଆନ ୬୭ : ୨

ତେଣୁ ମନୁଷ୍ୟକୁ କେବଳ ସତ୍ ଓ ଅସତ୍ ମଧ୍ୟରେ ଥିବା ପାର୍ଥକ୍ୟ ବିଷୟରେ ଜଣାଇ ଦିଆଯାଏ । କେହି ସତ୍ୟକୁ ସ୍ୱୀକାର ନ କଲେ ତାକୁ ବାଧ କରାଯାଏ ନାହିଁ । ଏଣୁ ଇସ୍‌ଲାମ ଶିକ୍ଷା ଦେଉଛି :

''ଧର୍ମ ସଂକ୍ରାନ୍ତରେ କୌଣସି ବାଧ-ବାଧକତା ନାହିଁ, ସତ୍‌ମାର୍ଗକୁ ଅସତ୍‌ମାର୍ଗରୁ ପୃଥକ୍ କରିଦିଆଯାଇଛି ।

କୁର୍‌ଆନ - ୨ : ୨୫୬

ଅନ୍ୟ ଏକ ସ୍ଥାନରେ କୁର୍‌ଆନ କହିଛି :

''ଏବଂ ତୁମ୍ଭେ (ଲୋକମାନଙ୍କୁ) କୁହ ! ଏହି ସତ୍ୟ (କୁର୍‌ଆନ) ତୁମ ପାଳନକର୍ତ୍ତାଙ୍କ ଠାରୁ ହିଁ ଆସିଛି; ସୁତରାଂ ଯାହାର ଇଚ୍ଛା ସେ (ଏହାକୁ) ବିଶ୍ୱାସ କରୁ ଏବଂ ଯାହାର ଇଚ୍ଛା ସେ ପ୍ରତ୍ୟାଖ୍ୟାନ କରିଦେଉ ।''

କୁର୍‌ଆନ ୧୮ : ୨୯

ଇଚ୍ଛା ବିରୁଦ୍ଧରେ କାହାରିକୁ ଈଶ୍ୱରଭକ୍ତ କରାଇବା ବା କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମମାର୍ଗରେ ପରିଚାଳିତ କରିବା ସମ୍ଭବ ନୁହେଁ । ପୂଜା-ଉପାସନା

ଆନ୍ତରିକ ପ୍ରେମ ଓ ଶ୍ରଦ୍ଧାରୁ ଜନ୍ମ ନିଏ । ତରବାରୀ ମୁନରେ ଏହା ଜୟ କରାଯାଇ ପାରେନାହିଁ ।

ଯେଉଁମାନଙ୍କର ଧାରଣା ରହିଛି ଯେ, ଇସ୍‌ଲାମ ଶକ୍ତି ବଳରେ ପ୍ରସାର ଲାଭ କରିଛି, ସେମାନଙ୍କର ଧାରଣା ଠିକ୍ ନୁହେଁ । କାହାରିକୁ ପିଟି ପିଟି ମୁସଲମାନ୍ କରାଯାଇଥିବାର ଦୃଷ୍ଟାନ୍ତ ଇତିହାସରେ ନାହିଁ । ଆରବରେ ମୁସଲମାନମାନେ ୧୪୦୦ ବର୍ଷ ଧରି ଶାସନ କରିଆସୁଛନ୍ତି (ଅଳ୍ପ କେତେ ବର୍ଷ ବ୍ୟତୀତ), କିନ୍ତୁ ଆଜି ୧କୋଟି ୪୦ଲକ୍ଷ ଖ୍ରୀଷ୍ଟିୟାନ ଆରବଦେଶଗୁଡ଼ିକରେ ଅଛନ୍ତି, ଯେଉଁମାନେ ବଂଶାନୁକ୍ରମିକ ଭାବରେ ସେଠାରେ ବସବାସ କରିଆସୁଛନ୍ତି । ଯଦି ଇସ୍‌ଲାମରେ ବଳପ୍ରୟୋଗର ଅନୁମତି ଥାଆନ୍ତା, ତେବେ ଆଜି ଆରବ ଦେଶମାନଙ୍କରେ ଏତେ ସଂଖ୍ୟକ ଖ୍ରୀଷ୍ଟିୟାନ୍ କିପରି ରହିଥାନ୍ତେ ? ଭାରତରେ ମୁସଲମାନ ଶାସକମାନେ ପ୍ରାୟ ୧୦୦୦ବର୍ଷ ଶାସନ କରିଛନ୍ତି । ଯଦି ଶକ୍ତି ପ୍ରୟୋଗ କରାଯାଇଥାଆନ୍ତା, ତେବେ ପ୍ରତ୍ୟେକ ଅଣ-ମୁସଲମାନଙ୍କୁ ଇସ୍‌ଲାମଧର୍ମ ଗ୍ରହଣ କରିବା ପାଇଁ ବାଧ କରାଯାଇ ପାରିଥାଆନ୍ତା । କିନ୍ତୁ ଆଜି ଭାରତରେ ପ୍ରାୟ ଶତକଡ଼ା ଅଶୀଭାଗ ଲୋକ ଅଣ-ମୁସଲମାନ ।

ଇଣ୍ଡୋନେସିଆରେ ସର୍ବାଧିକ ମୁସଲମାନ ବାସ କରନ୍ତି । ମାଲେସିଆରେ ମଧ୍ୟ ଅଧିକାଂଶ ମୁସଲମାନ ବସବାସ କରନ୍ତି । କୌଣସି ମୁସଲମାନ ସୈନ୍ୟବାହିନୀ ଇଣ୍ଡୋନେସିଆ ବା ମାଲେସିଆ ଆକ୍ରମଣ କରିଥିବାର ଦୃଷ୍ଟାନ୍ତ ଇତିହାସରେ ନାହିଁ । ବର୍ତ୍ତମାନ ପୃଥିବୀରେ ଦ୍ରୁତ ପ୍ରସାର ଲାଭ କରୁଥିବା ଧର୍ମ ହେଉଛି ଇସ୍‌ଲାମ । ଆମେରିକା ଓ ୟୁରୋପରେ ମଧ୍ୟ ସର୍ବାଧିକ ପ୍ରସାରିତ ଧର୍ମ ଇସ୍‌ଲାମ । କେଉଁ ଶକ୍ତି ଏହି ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକର ନାଗରିକମାନଙ୍କୁ ଇସ୍‌ଲାମ ଗ୍ରହଣ କରିବା ପାଇଁ ବାଧ କରୁଛି ?

ରିଡର୍ସ ଡାଇଜେଷ୍ଟର ୧୯୮୬ ସଂଖ୍ୟାରେ ୧୯୩୪ରୁ ୧୯୮୪ ମସିହା ୫୦ବର୍ଷର ଅବଧି ମଧ୍ୟରେ ପୃଥିବୀର ବୃହତ୍ ଧର୍ମଗୁଡ଼ିକର ଅଭିବୃଦ୍ଧିର ହାର ସମ୍ପର୍କରେ ଗୋଟିଏ ଲେଖା ପ୍ରକାଶ ପାଇଥିଲା । ଏହି ଲେଖାଟି 'ପ୍ଲେନ୍ ଟ୍ରୁଥ୍' ମାଗାଜିନ୍‌ରେ ମଧ୍ୟ ପ୍ରକାଶିତ ହୋଇଥିଲା, ଯେଉଁଥିରେ ଇସ୍‌ଲାମର ଅଭିବୃଦ୍ଧିର ହାର ଶତକଡ଼ା ଦୁଇଶହ ପଇଁତିରିଶ ପ୍ରତିଶତ ଥିବା ସ୍ଥଳେ ଖ୍ରୀଷ୍ଟିୟାନ ଧର୍ମର ହାର ସତଚାଳିଶି ପ୍ରତିଶତ ଦର୍ଶା ଯାଇଥିଲା । ଏଠାରେ ପ୍ରଶ୍ନ ଉଠୁଛି ଯେ,

୧୯୩୪ ମସିହାରୁ ୧୯୮୪ ମସିହା ମଧ୍ୟରେ ପୃଥିବୀରେ କେଉଁ ଯୁଦ୍ଧ ହୋଇଥିଲା, ଯାହା ଲକ୍ଷ ଲକ୍ଷ ଲୋକଙ୍କୁ ଇସ୍‌ଲାମ ଧର୍ମ ଗ୍ରହଣ କରିବା ପାଇଁ ବାଧ୍ୟ କରିଥିଲା ? ପ୍ରଖ୍ୟାତ ଐତିହାସିକ De Lacy O'Leary ତାଙ୍କ ପୁସ୍ତକ 'Islam at the Cross Roads'+ରେ ଲେଖିଛନ୍ତି–

> "History makes it clear however, that the legend of fanatical Muslims sweeping through the world and forcing Islam at the point of the sword upon conquered races is one of the most fantastically absurd myth that historians have ever repeated."

> "ଧର୍ମାନ୍ଧ ମୁସଲମାନ୍‌ମାନେ ବିଶ୍ୱସାରା ବ୍ୟାପିଯାଇ ତରବାରୀ ମୁନରେ ବିଜିତ ଜାତିମାନଙ୍କ ଉପରେ ଇସ୍‌ଲାମକୁ ଲଦିଦେଲେ ବୋଲି ଯେଉଁ କିମ୍ବଦନ୍ତୀମାନ ରହିଛି, ଏ ବିଷୟରେ ଇତିହାସ ଅନ୍ତତଃ ସ୍ପଷ୍ଟ କରିଦେଇଛି ଯେ ଏଗୁଡ଼ିକ ଅଜବ ପାରମ୍ପରିକ କାହାଣୀ ଯାହାର ପୁନରାବୃତ୍ତି ଐତିହାସିକମାନେ କରିଆସିଛନ୍ତି ।"

ଭାରତର ସମ୍ବିଧାନର ଧାରା ୨୫ରୁ ୨୮ରେ ଧର୍ମଗତ ସ୍ୱାଧିନତାର ଅଧିକାର ପ୍ରଦାନ କରାଯାଇଛି । ଏହି ଅଧିକାର ଦ୍ୱାରା ଭାରତର ପ୍ରତ୍ୟେକ ନାଗରିକକୁ ନିଜ ଇଚ୍ଛା ଅନୁସାରେ ଧର୍ମଗ୍ରହଣ, ପ୍ରଚାର ଓ ପ୍ରସାର କରିବାର ସ୍ୱାଧିନତା ଦିଆଯାଇଛି ।

## ୮. ଜ୍ଞାନାର୍ଜନର ଅଧିକାର (Right to acquire Knowledge)

'ଜ୍ଞାନ' ଅର୍ଥ ଜାଣିବା । ସାଧାରଣତଃ କୌଣସି ବିଷୟରେ ଭଲ ଭାବରେ ଜାଣିଥିବା ବ୍ୟକ୍ତିକୁ ଜ୍ଞାନୀ କୁହାଯାଏ । ଯଦି କେହି ଗଣିତରେ ପ୍ରବୀଣ ତେବେ କୁହାଯାଏ ଯେ, ତାଙ୍କର ଗଣିତରେ ବହୁତ ଜ୍ଞାନ ଅଛି ବା ସେ ଜଣେ ଗଣିତଜ୍ଞ । କିନ୍ତୁ ଧର୍ମର ଭାଷାରେ ଜ୍ଞାନର ଅର୍ଥ ହେଉଛି ଦିବ୍ୟଜ୍ଞାନ (Divine Knowledge) ଅର୍ଥାତ୍ ସଦ୍‌ଜୀବନଯାପନ ପାଇଁ ସ୍ରଷ୍ଟାଙ୍କ ଦ୍ୱାରା ନିର୍ଦ୍ଧାରିତ

---

\+ Islam at the Cross Roads - P. 8

ନୀତି-ନିୟମର ଜ୍ଞାନ । ଯେଉଁ ନୀତି-ନିୟମ ଅନୁଯାୟୀ ପରଲୋକରେ ମନୁଷ୍ୟର ବିଚାର ହେବ ଏବଂ ତା' ସ୍ୱର୍ଗ ବା ନର୍କର ନିଷ୍ପତ୍ତି କରାଯିବ, ତାକୁ ହିଁ ଜାଣିବା 'ଜ୍ଞାନ' । କେବଳ ଏହି ବିଦ୍ୟା ଲାଭ କରିଥିବା ବ୍ୟକ୍ତିମାନଙ୍କୁ ହିଁ ଦିବ୍ୟଗ୍ରନ୍ଥଗୁଡ଼ିକ ବିଦ୍ୱାନ୍ ବା ଜ୍ଞାନୀ ଆଖ୍ୟା ଦେଇଛନ୍ତି, କାରଣ ଏହି ବିଦ୍ୟା ଦ୍ୱାରା ହିଁ ସତ୍‌କର୍ମ କରିବା ସମ୍ଭବ ହୁଏ ଏବଂ ମନୁଷ୍ୟକୁ ଇହଲୋକ ଓ ପରଲୋକରେ ଶାନ୍ତି ଓ ସଫଳତା ମିଳେ । ସୁତରାଂ ବେଦ କହେ—

> ''ଏହି ସଂସାରରେ ଏପରି ମନୁଷ୍ୟ ବିରଳ ଅଛନ୍ତି ଯେ କି ପରମାତ୍ମାଙ୍କୁ ଜାଣନ୍ତି ଏବଂ ତାଙ୍କର ଆଜ୍ଞା ଅନୁକୂଳ ଆଚରଣ ସ୍ୱୀକାର କରି ସତ୍ୟୋପଦେଶ ଦିଅନ୍ତି । ଏପରି ବିଦ୍ୱାନ୍ ଏହି ସଂସାରରେ ଇହଲୋକ ଓ ପରଲୋକର ଜ୍ଞାତା ଅଟନ୍ତି ।''
>
> **ଋଗ୍‌ବେଦ, ତୃତୀୟ ମଣ୍ଡଳ, ସୂକ୍ତ-୫୪, ମନ୍ତ୍ର-୫**

ଏହି ଜ୍ଞାନ ନ ଥିଲେ ମନୁଷ୍ୟ ଈଶ୍ୱର ଏବଂ ପ୍ରାଣୀମାନଙ୍କର ଅଧିକାରଗୁଡ଼ିକ ଉଲ୍ଲଙ୍ଘନ କରିବ, ଯେଉଁଥିପାଇଁ ତାକୁ ଦଣ୍ଡିତ ହେବାକୁ ପଡ଼ିବ । ଏ ସ୍ଥାନରେ ଗଣିତ, ଭୂଗୋଳ ବା ଇଂରାଜୀର ଜ୍ଞାନ କିମ୍ବା ରକେଟ୍ ବା କମ୍ପ୍ୟୁଟର୍ ନିର୍ମାଣର ଜ୍ଞାନ ତାକୁ କୌଣସି ପ୍ରକାର ସାହାଯ୍ୟ କରିପାରିବ ନାହିଁ । ଉଦାହରଣ ସ୍ୱରୂପ, ଜଣେ ଭାରତୀୟ ନାଗରିକର ଦେଶର ଆଇନ୍ ବିଷୟରେ ମୌଳିକ ଜ୍ଞାନ ରହିବା ଉଚିତ । ଯଦି ସେ ଦେଶର ଆଇନ୍ ଭାଙ୍ଗି କୌଣସି ଧର୍ତ୍ତବ୍ୟ ଅପରାଧ କରେ, ତେବେ ସେ ଯେତେବଡ଼ ଡାକ୍ତର, ଇଞ୍ଜିନିୟର, ବୈଜ୍ଞାନିକ ବା ଆଇନଜ୍ଞ ହୋଇଥାଉ ନା କାହିଁକି, ଆଇନ୍ ତାକୁ ଅବଶ୍ୟ ଦଣ୍ଡିତ କରିବ । ଏହିପରି ଅସଂଖ୍ୟ ଉଚ୍ଚଶିକ୍ଷିତ ଜେଲଖାନାରେ ଦଣ୍ଡ ଭୋଗୁଛନ୍ତି । ସେମାନଙ୍କର ଡାକ୍ତରୀ ବା ଇଞ୍ଜିନିୟରିଂ ଡିଗ୍ରୀ ସେମାନଙ୍କୁ କୌଣସି ସାହାଯ୍ୟ କରିପାରୁ ନାହିଁ । ସେହିପରି ଈଶ୍ୱରଙ୍କ ସଂସାରରେ ରହି ତାଙ୍କ ବିଧିବିଧାନ ବିଷୟରେ ନ ଜାଣିଲେ ପରଲୋକରେ ମନୁଷ୍ୟକୁ ଘୋର ଦୁର୍ଦ୍ଦଶାର ସମ୍ମୁଖୀନ ହେବାକୁ ପଡ଼ିବ ।

ଏହାର ଅର୍ଥ ନୁହେଁ ଯେ, ପାଠ-ଶାଠ ପଢ଼ିବା ଉଚିତ୍ ନୁହେଁ ବା ଇଞ୍ଜିନିୟର, ଡାକ୍ତର ହେବା ଉଚିତ ନୁହେଁ । ଜୀବନ ନିର୍ବାହ କରିବା ପାଇଁ ଆବଶ୍ୟକ ସମସ୍ତ ଲାଭକାରୀ ବିଦ୍ୟା ଶିଖିବା ଉଚିତ । ଜୀବିକା ଅର୍ଜନ ପାଇଁ ବିଭିନ୍ନ ଭାଷାଗତ ଜ୍ଞାନ, କାରିଗରୀ ଓ ବୈଷୟିକ ବିଦ୍ୟା, ଉତ୍ତମ ନାଗରିକ

ଜୀବନଯାପନ ପାଇଁ ଆବଶ୍ୟକୀୟ ଜ୍ଞାନ ମଧ୍ୟ ମନୁଷ୍ୟର ପ୍ରାଥମିକ ଆବଶ୍ୟକତା । ଏହାଦ୍ୱାରା ବ୍ୟକ୍ତି, ସମାଜ ଓ ରାଷ୍ଟ୍ରର ବିକାଶ ସାଧନ ହୁଏ । ଯେହେତୁ ଉନ୍ନତ ମାନର ଜୀବନଯାପନ ପାଇଁ ଶିକ୍ଷା ଅପରିହାର୍ଯ୍ୟ, ଏହାର ବିକାଶ ପାଇଁ ପ୍ରଯତ୍ନ ହେବା ଉଚିତ୍ । କିନ୍ତୁ ପ୍ରକୃତ ସଦ୍‌ଜ୍ଞାନକୁ ଉପେକ୍ଷା କରି କେବଳ ଧନ ଓ ସାମାଜିକ ପ୍ରତିଷ୍ଠା ପାଇଁ ବୈଷୟିକ ଶିକ୍ଷାଗୁଡ଼ିକୁ ଜୀବନର ଲକ୍ଷ୍ୟ କରିନେବା ଉଚିତ ନୁହେଁ । ଯେଉଁ ବିଦ୍ୟାର ଲାଭ କେବଳ ମୃତ୍ୟୁ ପର୍ଯ୍ୟନ୍ତ ସୀମିତ, ତା' ପାଇଁ ଧନ-ମନ-ପ୍ରାଣ ସବୁ ଉତ୍ସର୍ଗ କରିଦିଆଯାଉ, ଅଥଚ ଯେଉଁ ବିଦ୍ୟା ମନୁଷ୍ୟର ଚରିତ୍ର ଗଠନ କରେ, ତାକୁ ମନୁଷ୍ୟ କରି ଗଢ଼େ, ସୁସ୍ଥ ସମାଜ ଗଠନରେ ସାହାଯ୍ୟ କରେ, ଏବଂ ଯାହା ଉପରେ ପରଲୋକରେ ମନୁଷ୍ୟର ଶାନ୍ତି ଓ ମୁକ୍ତି ନିର୍ଭର କରେ, ତା' ପ୍ରତି ଧ୍ୟାନ ନ ଦିଆଯାଉ—ଏହା ଆଦୌ ବିଜ୍ଞତାର ପରିଚୟ ନୁହେଁ । ମଟରଗାଡ଼ି ଚାଳନାର ଶିକ୍ଷା ହେଉ ବା ବିମାନ ଚାଳନାର ଶିକ୍ଷା, କୁଟୀର ଗଢ଼ିବାର ବିଦ୍ୟା ହେଉ ବା ପ୍ରାସାଦ ନିର୍ମାଣ କରିବାର ବିଦ୍ୟା—ଏଗୁଡ଼ିକ ବୃତ୍ତିଗତ ବା କାରିଗରୀ ବିଦ୍ୟା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଜୀବିକା ଅର୍ଜନ ଓ ସାମାଜିକ ପ୍ରତିଷ୍ଠା । ଏହାଦ୍ୱାରା ସତ୍ ଓ ଅସତ୍ ମଧ୍ୟରେ ପାର୍ଥକ୍ୟ ଜାଣିହୁଏ ନାହିଁ କିମ୍ବା ସତ୍ ଜୀବନଯାପନ କରିହୁଏ ନାହିଁ । ତେଣୁ ସଦ୍‌ଜ୍ଞାନ ଲାଭ କରିବା ମନୁଷ୍ୟର ଏକ ପ୍ରାଥମିକ ଆବଶ୍ୟକତା ଏବଂ ସତ୍‌ପଥର ସନ୍ଧାନ ତାର ମୌଳିକ ଦାୟିତ୍ୱ ।

ପୃଥିବୀପୃଷ୍ଠରେ ବାସ କରୁଥିବା ଅଧିକାଂଶ ବ୍ୟକ୍ତି ସତ୍ ଓ ଅସତ୍ ମଧ୍ୟରେ ଥିବା ପାର୍ଥକ୍ୟ ଜାଣନ୍ତି ନାହିଁ । ଲକ୍ଷ ଲକ୍ଷ ଲୋକ ଜାଣନ୍ତି ନାହିଁ ଯେ, ତାଙ୍କର କେହି ଜଣେ ସ୍ରଷ୍ଟା ମଧ୍ୟ ଅଛନ୍ତି, ଯିଏ ତା' ପାଇଁ ଏକ ଆଦର୍ଶ ଜୀବନଯାପନ କରିବାର ଶୈଳୀ ଦେଇଛନ୍ତି ।

କୋଟି କୋଟି ଲୋକ ଈଶ୍ୱରଙ୍କର ଅଧିକାର ଏବଂ ତାଙ୍କ ପ୍ରତି ନିଜର କର୍ତ୍ତବ୍ୟ ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ । ଅନେକଙ୍କର ଧର୍ମଗ୍ରନ୍ଥ ବା ଧର୍ମଦୂତମାନଙ୍କ ସମ୍ପର୍କରେ କୌଣସି ଧାରଣା ନ ଥାଏ । ଅଗଣିତ ନାର-ନାରୀ ନିଜର କର୍ମର ପରିଣତି ସମ୍ପର୍କରେ ଜାଣନ୍ତି ନାହିଁ । ସେମାନେ ଜାଣନ୍ତି ନାହିଁ ଯେ, ଧରାପୃଷ୍ଠ ମାନବ ପାଇଁ ଏକ ପରୀକ୍ଷାକେନ୍ଦ୍ର, ବ୍ୟକ୍ତିର ଜୀବନକାଳ ଏହି ପରୀକ୍ଷାର ଅବଧି ଏବଂ ମୃତ୍ୟୁର ଅନ୍ତିମ ଘଣ୍ଟି ଏହାର ସମାପ୍ତି ଘୋଷଣା କରିଦିଏ । ମୃତ୍ୟୁ ଏକ ସ୍ଥାନର ପରିବର୍ତ୍ତନ ଏବଂ ପରଲୋକରେ ନିଜର ଗୋଟି ଗୋଟି କର୍ମ ପାଇଁ

ସମସ୍ତେ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ । ଉଚିତ ଶିକ୍ଷାର ଅଭାବ ଯୋଗୁଁ ମନୁଷ୍ୟ ନିର୍ଭୀକ ଭାବରେ ମନଇଚ୍ଛା ଜୀବନଯାପନ କରୁଛି ଏବଂ ନିଜ କର୍ତ୍ତବ୍ୟରେ ଘୋର ଅବହେଳା କରି ସ୍ରଷ୍ଟା ଓ ସୃଷ୍ଟି ଉଭୟଙ୍କ ଅଧିକାରକୁ କ୍ଷୁର୍ଣ୍ଣ କରିଚାଲିଛି ।

ସୃଷ୍ଟିକୁ ସେ ସ୍ରଷ୍ଟା ମନେ କରେ ।
ସଦ୍ ଉପାୟରେ ଅର୍ଜିତ ହେଉ ବା ଅସଦ୍ ଉପାୟ—
ପ୍ରତ୍ୟେକ ରୁଟି ତାକୁ ଖାଦ୍ୟ ଜଣାପଡ଼େ ।
ପ୍ରତ୍ୟେକ ମୁଦ୍ରାକୁ ସେ ଧନ ମନେକରେ ।
ସବୁ ନାରୀ ତାକୁ ପତ୍ନୀ ଭଳି ଦିଶନ୍ତି ।

ନିଜ କାମନାଗୁଡ଼ିକୁ କୌଣସି ଉପାୟରେ ଚରିତାର୍ଥ କରି ଦୁନିଆର ଏଇ ଶ୍ରେଷ୍ଠପ୍ରାଣୀ ଏକ ପଶୁତୁଲ୍ୟ ଜୀବନ ବିତାଇ ସଂସାରରୁ ଚାଲିଯାଏ ଏବଂ ପ୍ରମାଣିତ କରିଯାଏ ଯେ ସେ 'ମନୁଷ୍ୟ' ନ ଥିଲା, ବରଂ ଚାର୍ଲସ୍ ଡାରଉ୍ଵିନ୍‌ଙ୍କ ବର୍ଣ୍ଣିତ 'ମାଙ୍କଡ଼' ଥିଲା ।

ଅନ୍ଧାରରେ ପଥହରା ପଥିକଟି ପାଇଁ ଆଲୋକ ଯେପରି ଏକ ଆବଶ୍ୟକତା, ସଂସାରରେ ଜୀବନଯାପନ କରିବା ପାଇଁ ସଦ୍‌ଜ୍ଞାନ ମଧ୍ୟ ସେହିପରି ଏକ ଆବଶ୍ୟକତା । ମନୁଷ୍ୟର ଏହି ଆବଶ୍ୟକତାକୁ ପୂରଣ କରିବା ପାଇଁ ଈଶ୍ୱର ଧରାପୃଷ୍ଠରେ ଲକ୍ଷାଧିକ ମାର୍ଗଦର୍ଶକ ପ୍ରେରଣ କରିଛନ୍ତି । ସମାଜରେ ମନୁଷ୍ୟର ଏହି ଅଧିକାର ଯୋଗୁଁ ପରମେଶ୍ୱର ଆଦେଶ ଦେଇଛନ୍ତି–

"(ହେ ମୁହମ୍ମଦ) ବିଜ୍ଞତାର ସହ ସଦୁପଦେଶ ମାଧ୍ୟମରେ ନିଜ ପାଳନକର୍ତ୍ତାଙ୍କ ମାର୍ଗ ପ୍ରତି (ଲୋକମାନଙ୍କୁ) ଆମନ୍ତ୍ରିତ କର ଏବଂ ସର୍ବୋତ୍ତମ ଶୈଳୀରେ ସେମାନଙ୍କ ସହିତ ଆଲୋଚନା କର । ନିଃସନ୍ଦେହ ତୁମ ପାଳନକର୍ତ୍ତା ପଥଭ୍ରଷ୍ଟ ହେଉଥିବା ଏବଂ ପଥପ୍ରାପ୍ତ କରୁଥିବା ଲୋକମାନଙ୍କୁ ଭଲ ରୂପେ ଜାଣନ୍ତି ।"

କୁର୍‌ଆନ ୧୬ : ୧୨୫

ପରମେଶ୍ୱର ଏହା ମଧ୍ୟ ଆଦେଶ ଦେଇଛନ୍ତି–

"ଏବଂ ତୁମ୍ଭମାନଙ୍କ ମଧ୍ୟରେ ଏପରି ଏକ ଗୋଷ୍ଠୀ ରହିବା ଆବଶ୍ୟକ, ଯିଏ ସତ୍‌କର୍ମ କରିବା ପାଇଁ ଆମନ୍ତ୍ରଣ କରିବ ଏବଂ

ଦୁଷ୍କର୍ମରୁ ଲୋକମାନଙ୍କୁ ନିବୃତ୍ତ ରଖିବ । ଏହି ବ୍ୟକ୍ତିମାନେ ହିଁ ସଫଳ ହେବେ ।''

କୁର୍‌ଆନ ୩ : ୧୦୪

ମହାମାନ୍ୟ ମୁହମ୍ମଦ କହିଛନ୍ତି :

''(ଜ୍ଞାନର) ଗୋଟିଏ ବାକ୍ୟ ହେଉ ପଛେ ମୋ ତରଫରୁ ପହଞ୍ଚାଇ ଦିଅ ।''

**ସହୀବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍-୬୬୭**

ସଦୁପଦେଶ ଏକ ମହତ୍ କାର୍ଯ୍ୟ । ଆରବୀରେ ଏହାକୁ ''ଦାଓ୍ୱତ୍'' କୁହାଯାଏ । ଯେପରି କୌଣସି ଦେଶର ମୌଳିକ ଆଇନ୍ କାନୁନ୍ ବିଷୟରେ ଜାଣିବା ଓ ତା' ଅନୁସାରେ ଚଳିବା ସେ ଦେଶର ନାଗରିକମାନଙ୍କର କର୍ତ୍ତବ୍ୟ, ସେହିପରି ଈଶ୍ୱରଙ୍କର ବିଧି-ବିଧାନ ବିଷୟରେ ଅବଗତ ହେବା ଓ ତାକୁ ପାଳନ କରିବା ପୃଥିବୀର ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ । କିନ୍ତୁ ଯେହେତୁ ଈଶ୍ୱର ଓ ତାଙ୍କ ବିଧିବିଧାନ ସମ୍ପର୍କୀୟ ଜ୍ଞାନ ଧର୍ମର ଅନ୍ତର୍ଗତ ଏବଂ ଆମ ଭାରତ ଗୋଟିଏ ଧର୍ମ ନିରପେକ୍ଷ ରାଷ୍ଟ୍ର, ନାଗରିକମାନଙ୍କୁ ଏହା ସାଂସ୍କୃତିକ ଓ ଶିକ୍ଷାଗତ ଅଧିକାର ରୂପେ ପ୍ରଦାନ କରାଯାଇଛି । ଯାହାଦ୍ୱାରା ସେମାନେ ନିଜ ନିଜର ଭାଷା, ସାହିତ୍ୟ, ସଂସ୍କୃତି ଆଦିର ସ୍ୱତନ୍ତ୍ରତା ରକ୍ଷା କରିପାରିବେ ଏବଂ ନିଜ ପସନ୍ଦ ଅନୁସାରେ ଶିକ୍ଷାନୁଷ୍ଠାନ ମଧ୍ୟ ପ୍ରତିଷ୍ଠା କରିପାରିବେ । ସେମାନେ ସମ୍ବିଧାନର ଧାରା ୨୫ରୁ ୨୮ ଅନୁସାରେ ନିଜ ନିଜର ଧର୍ମର ପ୍ରଚାର ମଧ୍ୟ କରିପାରିବେ ।

ଇସ୍‌ଲାମର କେତୋଟି ମୌଳିକ ମାନବାଧିକାର ବିଷୟରେ ଆମେ ଜାଣିଲୁ । ଯେଉଁ ବ୍ୟକ୍ତି ଈଶ୍ୱର ଓ ତାଙ୍କ ପରିବାରର ସଦସ୍ୟମାନଙ୍କର ଅଧିକାରଗୁଡ଼ିକ ପ୍ରତି ଯତ୍ନବାନ୍ ଥାଏ ଏବଂ କାହାରି ଅଧିକାର କ୍ଷୁର୍ଣ୍ଣ କରୁନଥାଏ, ସେଇ ହିଁ ଈଶ୍ୱରଙ୍କ ନିକଟରେ ଯଥାର୍ଥରେ ଧାର୍ମିକ । ମାନବାଧିକାରର ମାହାତ୍ମ୍ୟ ଇସ୍‌ଲାମର ଧର୍ମଦୂତ ମହାମାନ୍ୟ ମୁହମ୍ମଦଙ୍କ ନିମ୍ନବାଣୀରୁ ସ୍ପଷ୍ଟ ଅନୁମେୟ :

''ଦିନେ ମହାମାନ୍ୟ ଧର୍ମଦୂତ ନିଜ ଅନୁଗାମୀମାନଙ୍କୁ ପଚାରିଲେ, କହିଲ କାଙ୍ଗାଳ କିଏ ? ଅନୁଗାମୀମାନେ ଉତ୍ତର ଦେଲେ–'ଯାହା ପାଖରେ ଟଙ୍କା ପଇସା ନାହିଁ, ସେଇ କାଙ୍ଗାଳ ।' ଈଶ୍ୱରଙ୍କ

ଧର୍ମଦୂତ କହିଲେ–ଆମ୍ଭମାନଙ୍କ ମଧ୍ୟରେ କାଙ୍ଗାଳ ସେହି, ଯିଏ ଅନ୍ତିମ ବିଚାର ଦିନ ନମାଜ୍, ରୋଜା ଏବଂ ଜକାତ୍‌ର ଭଣ୍ଡାର ନେଇ ଉପସ୍ଥିତ ହେବ, କିନ୍ତୁ ଦୁନିଆରେ କାହାକୁ ଗାଳିଗୁଲଜ କରିଥିବ, କାହା ପ୍ରତି ମିଥ୍ୟାରୋପ କରିଥିବ, କାହାକୁ ମାରପିଟ କରିଥିବ କିମ୍ବା ଅନ୍ୟାୟରେ କାହା ଧନ ଖାଇଯାଇଥିବ । ଯେତେବେଳେ ସେ ବିଚାରର ସମ୍ମୁଖୀନ ହେବ, ତା' ଦ୍ୱାରା ଅତ୍ୟାଚାରିତ ବ୍ୟକ୍ତିମାନେ ଉପସ୍ଥିତ ହେବେ ଏବଂ ଯାହାର ଯାହା ଅଧିକାର ସିଦ୍ଧ ହେବ, ତା' ଅର୍ଜିତ ପୁଣ୍ୟରୁ ସେମାନଙ୍କୁ (କ୍ଷତି ପୂରଣ) ଦେଇ ଦିଆଯିବ । ଏପରିକି ତା'ର ସମସ୍ତ ପୁଣ୍ୟ ଶେଷ ହୋଇଯିବ । ତା'ପରେ ଦାବୀଦାରମାନଙ୍କର ପାପ ତା' ଉପରେ ଲଦି ଦିଆଯିବ ଏବଂ ତାକୁ ନର୍କରେ ଫିଙ୍ଗି ଦିଆଯିବ ।''

ସହୀ ମୁସଲିମ୍, ହଦିସ୍ - ୬୨୫୧

ଏଣୁ ଆମେ ପ୍ରତ୍ୟେକଙ୍କର ନ୍ୟାଯ୍ୟ ଅଧିକାର ସମ୍ପର୍କରେ ସଦା ସଚେତନ ରହିବା ଉଚିତ । ଆମ କର୍ମ ଦ୍ୱାରା ସମାଜର ସର୍ବଦା ମଙ୍ଗଳ ହେଉ; କିନ୍ତୁ କଦାପି କାହାରି ଅନିଷ୍ଟ ନ ହେଉ ।





# ଇସ୍‌ଲାମର ନୈତିକ ମୂଲ୍ୟବୋଧ

ପ୍ରତ୍ୟେକ ସଭ୍ୟ ସମାଜ ମାନବୀୟ ମୂଲ୍ୟବୋଧର ସମ୍ମାନ କରେ ଏବଂ ଚରିତ୍ରବାନ୍ ପ୍ରତି କ୍ଷେତ୍ରରେ ପ୍ରଶଂସିତ ହୁଅନ୍ତି । ସତ୍ୟବାଦୀ, ମିଷ୍ଟଭାଷୀ ଓ ନ୍ୟାୟପ୍ରିୟ ବ୍ୟକ୍ତିମାନଙ୍କର ସବୁଠି ଆଦର ଥାଏ । ଦୟା, କ୍ଷମା, ପ୍ରେମ ଓ ପରୋପକାର ଆଦି ଧାର୍ମିକମାନଙ୍କର ଭୂଷଣ । ଅନ୍ୟ ପକ୍ଷରେ ମିଥ୍ୟାବାଦୀ, ଶଠ, ଲୋଭୀ, କପଟୀ, କ୍ରୋଧୀ, ଅହଂକାରୀ, ନିର୍ଦ୍ଦୟୀ, ହିଂସୁକ ଓ ପରନିନ୍ଦୁକ ବ୍ୟକ୍ତିର କୌଣସି ସମ୍ମାନ ନ ଥାଏ । ସମାଜ ଏପରି ବ୍ୟକ୍ତିକୁ ଘୃଣା କରେ । ଏମାନେ ସମାଜରେ ବିଭିନ୍ନ ବିଭ୍ରାଟର କାରଣ ହୁଅନ୍ତି । ବ୍ୟକ୍ତିର ଚରିତ୍ରର ବିକାଶ ନ ହେଲେ ସମାଜରେ ଅନ୍ୟମାନଙ୍କର ଅଧିକାରଗୁଡ଼ିକର ସୁରକ୍ଷା ସମ୍ଭବ ନୁହେଁ । କାରଣ ଦୁଃଶ୍ଚରିତ୍ର ବ୍ୟକ୍ତିର କୌଣସି ଦାୟିତ୍ୱବୋଧ ନଥାଏ । ତେଣୁ ତା'ଠାରୁ ଅନ୍ୟମାନଙ୍କର ଅଧିକାର ପ୍ରତି ସମ୍ମାନ ଆଶା କରିବା ବୃଥା । ମିଥ୍ୟାବାଦୀର ଗୋଟିଏ ମିଥ୍ୟା ଜଣେ ବ୍ୟକ୍ତିକୁ ତା'ର ନ୍ୟାର୍ଯ୍ୟ ଅଧିକାରରୁ ବଞ୍ଚିତ କରିଦିଏ । ଜଣେ ଲୋଭୀ ଲୋଭର ବଶବର୍ତ୍ତୀ ହୋଇ ଅନ୍ୟର ଧନ-ଜୀବନ ନେଇଯାଏ । ସେହିପରି ଅହଂକାରୀ, କ୍ରୋଧୀ ଓ ପରନିନ୍ଦୁକମାନଙ୍କ ଦ୍ୱାରା ସମାଜର ଧନ-ଜୀବନ ଓ ମାନ-ସମ୍ମାନ କ୍ଷତିଗ୍ରସ୍ତ ହୁଏ । ତେଣୁ ବ୍ୟକ୍ତିର ଆତ୍ମଶୁଦ୍ଧି ଓ ଉତ୍ତମ ଚରିତ୍ର ଗଠନ ପାଇଁ ଇସ୍‌ଲାମ ସ୍ୱଷ୍ଟ ନୀତି-ନିୟମ ନିର୍ଦ୍ଧାରଣ କରିଛି ।

ଯେଉଁ ମାନବୀୟ ଗୁଣ ଦ୍ୱାରା ବ୍ୟକ୍ତି ଓ ସମାଜର ଉନ୍ନତି ହୁଏ ଏବଂ ମଣିଷର ବ୍ୟକ୍ତିତ୍ୱର ବିକାଶ ଘଟେ, ଇସ୍‌ଲାମ ସେଗୁଡ଼ିକ ଧାରଣ କରିବାର ଆଦେଶ ଦେଇଛି ଏବଂ ଯେଉଁ ଦୁର୍ଗୁଣଗୁଡ଼ିକ ବ୍ୟକ୍ତି ଓ ସମାଜ ପାଇଁ କ୍ଷତିକାରକ, ସେଗୁଡ଼ିକ ନିଷିଦ୍ଧ କରିଛି । ଜଣେ ମୁସଲମାନ ସମସ୍ତ ଦୁର୍ଗୁଣଗୁଡ଼ିକୁ ବର୍ଜନ କରିବା ଅନିବାର୍ଯ୍ୟ, ଅନ୍ୟଥା ସେ ଜଣେ ଭଲ ମୁସଲମାନ ହୋଇପାରିବ ନାହିଁ । ଉତ୍ତମ ଚରିତ୍ରର ମହତ୍ତ୍ୱ ବର୍ଣ୍ଣନା କରି ଈଶ୍ୱରଙ୍କର ମହାମାନ୍ୟ ଧର୍ମଦୂତ କହିଛନ୍ତି :

"ତୁମମାନଙ୍କ ମଧ୍ୟରେ ସବୁଠାରୁ ଉତ୍ତମ ବ୍ୟକ୍ତି ହେଉଛି ସେହି, ଯାହାର ବ୍ୟବହାର ଓ ଚରିତ୍ର ସବୁଠାରୁ ଭଲ ।"

ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ୭୫୯+

ଆସନ୍ତୁ, ଚରିତ୍ର ଗଠନ କ୍ଷେତ୍ରରେ ଇସ୍‌ଲାମରେ ଦିଆଯାଇଥିବା କେତୋଟି ନୀତିଶିକ୍ଷା ଉପରେ ଆଲୋଚନା କରିବା–

♦ ସତ୍ୟବାଦିତା

ଇସ୍‌ଲାମର ପ୍ରଥମ ନୀତିଶିକ୍ଷା ହେଉଛି 'ସତ୍ୟବାଦିତା' । ମହାମାନ୍ୟ ଧର୍ମଦୂତ କହିଛନ୍ତି :

"ସତ୍ୟନିଷ୍ଠତା ମନୁଷ୍ୟକୁ ଧର୍ମପରାୟଣ କରେ ଏବଂ ଧର୍ମପରାୟଣତା ଦ୍ୱାରା ସ୍ୱର୍ଗ ଲାଭ ହୁଏ ।"

ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ୍ ୧୧୬

ଏପରି କଥା ତୁଣ୍ଡରେ କହିବା ବା କାର୍ଯ୍ୟରେ ପ୍ରକାଶ କରିବା ଯାହାର ଅସ୍ତିତ୍ୱ ହିଁ ହୃଦୟ ଭିତରେ ନାହିଁ, ତାକୁ ମିଥ୍ୟା କୁହାଯାଏ । ସତ୍ୟ ବିରୋଧୀ କୌଣସି କଥା, ଆଚରଣ ବା ଚିନ୍ତାଧାରା ମିଥ୍ୟାର ଅନ୍ତର୍ଭୁକ୍ତ । ଯେପରି ଆମେ ଏହା ପସନ୍ଦ କରୁନା ଯେ କେହି ଆମକୁ ମିଛ କହୁ, ସେହିପରି ଅନ୍ୟମାନେ ମଧ୍ୟ ଏହା ପସନ୍ଦ କରନ୍ତି ନାହିଁ ଯେ, ସେମାନଙ୍କୁ କେହି ମିଛ କହୁ ।

ମିଥ୍ୟାବାଦୀର ସର୍ବନିମ୍ନ କ୍ଷତି ଏହା ହୁଏ ଯେ, ତା'ର ସତ୍ୟକୁ ମଧ୍ୟ କେହି ବିଶ୍ୱାସ କରନ୍ତି ନାହିଁ । ଏହାଛଡ଼ା ମିଥ୍ୟା କହିବା ଦ୍ୱାରା ଅନ୍ୟମାନଙ୍କର ମଧ୍ୟ ଅନେକ କ୍ଷତି ହୁଏ । ଏଇଥିପାଇଁ ଈଶ୍ୱର ଆଦେଶ ଦେଇଛନ୍ତି :

"ହେ ବିଶ୍ୱାସକାରୀମାନେ, ଅଲ୍ଲାହ୍‌ଙ୍କ ପ୍ରତି ଭୟ ରଖ ଏବଂ ସିଧାସଳଖ ସତ୍ୟ କୁହ ।"

କୁର୍‌ଆନ ୩୩ : ୭୦

କଥା ହେଉ ବା ଆଚରଣ, ମିଥ୍ୟାର ସମସ୍ତ ସ୍ୱରୂପଗୁଡ଼ିକ ଇସ୍‌ଲାମରେ ନିଷିଦ୍ଧ କରାଯାଇଛି, ଯଥା–ମିଥ୍ୟା ସାକ୍ଷୀ ଦେବା, ମିଥ୍ୟା ଡାକ୍ତରୀ ପ୍ରମାଣପତ୍ର

+ ଦେଖନ୍ତୁ ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ୍ ୫୬ ଓ ୬୧

ଦେବା, ମିଥ୍ୟା ସୁପାରିଶ ବା ଅନୁମୋଦନ କରିବା ଇତ୍ୟାଦି । ଏଗୁଡ଼ିକ ଧର୍ମରେ ଅତି ସଙ୍ଗୀନ୍ ଅପରାଧ । ଜଣେ ସଚ୍ଚୋଟ ମୁସଲିମ୍ ଯାହା କହେ ସତ୍ୟ ହିଁ କହେ ।

## ♦ ପ୍ରତିଶ୍ରୁତି ପାଳନ

ଅନେକ ଲୋକ କୌଣସି ପ୍ରତିଶ୍ରୁତି ଦେଇ ତାକୁ ଭାଙ୍ଗି ଦିଅନ୍ତି । ନିଜ ବଚନ ଉପରେ ଦୃଢ଼ ରୁହନ୍ତି ନାହିଁ । ଏହାଦ୍ୱାରା ଅନ୍ୟ ବ୍ୟକ୍ତିମାନେ ପ୍ରତାରିତ ଓ କ୍ଷତିଗ୍ରସ୍ତ ମଧ୍ୟ ହୁଅନ୍ତି । କଥା ଦେଇ ତାକୁ ରକ୍ଷା ନ କରିବା ବ୍ୟକ୍ତି ସମାଜର ବିଶ୍ୱାସ ଓ ଭରସା ହରାନ୍ତି । କେହି ଜଣେ ଆମକୁ ଭଲ ମଣିଷ ଭାବି ଆମ ପ୍ରତି ବିଶ୍ୱାସ କଲା, ଅଥଚ ଆମେ କେତେ ସହଜରେ ତା' ଭରସା ଭାଙ୍ଗିଦେଉ ଏବଂ ତା' ସହ ପ୍ରତାରଣା କରି ତାକୁ ଜଣାଇଦେଉ ଯେ, ଆମେ ପ୍ରକୃତରେ ତା' ବିଶ୍ୱାସର ପାତ୍ର ନୋହୁଁ । ପବିତ୍ର କୁର୍‌ଆନ ଆଦେଶ ଦେଇଛି :

> ''ନିଜର ପ୍ରତିଶ୍ରୁତି ରକ୍ଷା କର, (କାରଣ) ପ୍ରତ୍ୟେକ ଅଙ୍ଗୀକାର ସମ୍ପର୍କରେ ତୁମ୍ଭମାନଙ୍କୁ ନିଶ୍ଚୟ ପ୍ରଶ୍ନ କରାଯିବ ।''
>
> କୁର୍‌ଆନ ୧୭ : ୩୪

ଦୁଃଖର କଥା, ଅନେକ ମୁସଲ୍‌ମାନ ପ୍ରତିଶ୍ରୁତି ଦେଇ ତାକୁ ରକ୍ଷା କରନ୍ତି ନାହିଁ । ସେମାନେ କଥା ଦେଇ ଭୁଲିଯାଆନ୍ତି । ଅଙ୍ଗୀକାର କୌଣସି ଫମ୍ପା ଶବ୍ଦ ନୁହେଁ । ଏହା ଏକ ଗୁରୁ ଦାୟିତ୍ୱ, ଯେଉଁଥିପାଇଁ ଆମକୁ ହିସାବ ଦେବାକୁ ହେବ । କାହାକୁ ପ୍ରତିଶ୍ରୁତି ଦେଇଥିଲେ ତାକୁ ଠିକ୍ ଠିକ୍ ପାଳନ କରିବା ଉଚିତ । ସମୟ ଦେଇଥିଲେ ଠିକ୍ ସମୟରେ ପହଞ୍ଚିବା ଉଚିତ, ସାହାଯ୍ୟ କରିବାକୁ କଥା ଦେଇଥିଲେ ସାହାଯ୍ୟ କରିବା ଉଚିତ୍ । ଏପରି ବ୍ୟକ୍ତି ସମାଜରେ ସମ୍ମାନିତ ହୁଅନ୍ତି । ଅନ୍ୟ ପକ୍ଷରେ, ନିଜ ଅଙ୍ଗୀକାର ରକ୍ଷା ନ କରୁଥିବା ପ୍ରତାରକ ସମାଜରେ ନିନ୍ଦିତ ହୁଏ ଏବଂ ପରଲୋକରେ ମଧ୍ୟ ନିଜର ପାପ ପାଇଁ ତାକୁ ଦଣ୍ଡ ଭୋଗ କରିବାକୁ ପଡ଼େ ।

## ♦ ଅମାନତର ସୁରକ୍ଷା

'ଅମାନତ' ଅର୍ଥ କୌଣସି ବ୍ୟକ୍ତି ପ୍ରତି କୌଣସି ବିଷୟରେ ଭରସା କରିବା । ଯଦି କୌଣସି ଜିନିଷ କାହା ପ୍ରତି ବିଶ୍ୱାସ କରି ତା' ପାଖରେ ରଖାଯାଏ

ଏବଂ ଭରସା କରାଯାଏ ଯେ, ସେ ବ୍ୟକ୍ତି ନିକଟରେ ଏହା ନିଶ୍ଚୟ ସୁରକ୍ଷିତ ରହିବ, ତେବେ ତାକୁ 'ଅମାନତ' କୁହାଯାଏ ।

ବର୍ତ୍ତମାନ ସମାଜରେ ଅମାନତ ଆତ୍ମସାତ୍ କରିବା ଏକ ଅତି ସାଧାରଣ ଘଟଣା । କିଛି ସମୟ ପାଇଁ ମାଗି ଆଣିଥିବା ଟଙ୍କାପଇସା, ବହି, ବାସନକୁସନ ବା ଅନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷଗୁଡ଼ିକ ଆଉ ତା' ମାଲିକକୁ ଫେରାଯାଏ ନାହିଁ । ଆମ ଦାୟିତ୍ୱରେ ରଖାଯାଇଥିବା ସରକାରୀ ଅର୍ଥ ବା ସମାଜର କୌଣସି ପାଣ୍ଠି ମଧ୍ୟ ଅମାନତ । ସେଥିରେ ତୋଷାରପାତ କରିବା ମହାପାପ । ଅମାନତ ଛୋଟ ହେଉ ବା ବଡ଼, ତା' ସ୍ୱାମୀକୁ ଅକ୍ଷତ ଅବସ୍ଥାରେ ଫେରାଇଦେବା ଅନିବାର୍ଯ୍ୟ । ପବିତ୍ର କୁର୍‌ଆନ ଆଦେଶ ଦେଇଛି :

> "ଅଲ୍ଲାହ୍ ତୁମମାନଙ୍କୁ ଆଦେଶ ଦେଉଛନ୍ତି ଯେ, ତୁମ୍ଭେମାନେ ଯାବତୀୟ ଅମାନତ ତାର ନ୍ୟାର୍ଯ୍ୟ ଅଧିକାରୀକୁ ଅର୍ପଣ କର, ଆଉ ଯେତେବେଳେ ଲୋକମାନଙ୍କ ମଧ୍ୟରେ ନିଷ୍ପତ୍ତି କର, ନ୍ୟାୟର ସହିତ କର । ଅଲ୍ଲାହ୍ ତୁମ୍ଭମାନଙ୍କୁ ଅତୀବ ଉତ୍ତମ ଉପଦେଶ ଦେଉଛନ୍ତି ଏବଂ ଅଲ୍ଲାହ୍ ନିଶ୍ଚିତ ରୂପେ ସବୁକିଛି ଶୁଣନ୍ତି ଓ ଦେଖନ୍ତି ।"

କୁର୍‌ଆନ ୪ : ୫୮

ସେହିପରି ସରକାରୀ ସମ୍ପତ୍ତି, ସର୍ବସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ସଡ଼କ, ବସ୍, ଟ୍ରେନ୍ ଇତ୍ୟାଦି ମଧ୍ୟ ଅମାନତର ଅନ୍ତର୍ଭୁକ୍ତ । ଏଗୁଡ଼ିକୁ କୌଣସି ପ୍ରକାର କ୍ଷତି ପହଞ୍ଚାଇବା ମଧ୍ୟ ପାପ । ଅଫିସ୍ କାଗଜ, ଟେଲିଫୋନ୍, ଗାଡ଼ି ଇତ୍ୟାଦି ମଧ୍ୟ କର୍ମଚାରୀଙ୍କ ନିକଟରେ ସରକାରଙ୍କର ଅମାନତ । ଏଗୁଡ଼ିକୁ ନିଜ ବ୍ୟକ୍ତିଗତ ବ୍ୟବହାରରେ ଲଗାଇବା ନିଷିଦ୍ଧ । ଜଣେ ମୁସଲମାନ ଏଗୁଡ଼ିକ ପ୍ରତି ଯତ୍ନବାନ୍ ହେବା ଉଚିତ । ଅନ୍ୟଥା ଅନ୍ତିମ ବିଚାର ଦିନ ନିଜ ଅର୍ଜିତ ପୁଣ୍ୟରୁ ଅନ୍ୟର ପ୍ରାପ୍ୟ ଦେବାକୁ ହେବ ।

ମିଥ୍ୟା କହିବା, କଥାଦେଇ କଥା ରକ୍ଷା ନ କରିବା ଏବଂ ଅନ୍ୟର ଅମାନତ ଆତ୍ମସାତ୍ କରିବା ଇସ୍‌ଲାମରେ ଅତି ଜଘନ୍ୟ ପାପ । ଏହି ଦୁର୍ଗୁଣଗୁଡ଼ିକ ଶଠ ଓ କପଟୀ ବ୍ୟକ୍ତିମାନଙ୍କର ହିଁ ଥାଏ । ମହାମାନ୍ୟ ମୁହମ୍ମଦ ଜଣେ କପଟୀର ସଂଜ୍ଞା ନିରୂପଣ କରି କହିଛନ୍ତି :

"ଜଣେ କପଟୀର ତିନିଗୋଟି ଲକ୍ଷଣ । ଯଦି ସେ କଥା କହେ, ମିଥ୍ୟା କହେ, ଯଦି ତା' ପ୍ରତି ବିଶ୍ୱାସ କରାଯାଏ, ସେ ବିଶ୍ୱାସଘାତକତା କରେ ଏବଂ ଯଦି କୌଣସି ଅଙ୍ଗୀକାର କରେ, ତାକୁ ଭାଙ୍ଗିଦିଏ ।"+

ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ୧୨

କପଟୀ ଓ ପ୍ରତାରକମାନଙ୍କୁ ସମାଜ ଅତି ନୀଚ ଦୃଷ୍ଟିରେ ଦେଖେ । ସେମାନଙ୍କ ମୁହଁରେ ଯାହା ଥାଏ, ମନରେ ତାହା ନଥାଏ । ଜଣେ ମୁସଲମାନର ଅନ୍ତର ଓ ବାହାର ମଧ୍ୟରେ କୌଣସି ପ୍ରଭେଦ ରହିବା ଉଚିତ ନୁହେଁ ।

### ♦ କ୍ରୋଧ ସମ୍ବରଣ

କାମ, କ୍ରୋଧ, ଲୋଭ ଓ ମୋହ ଇତ୍ୟାଦି ଇନ୍ଦ୍ରିୟଗୁଡ଼ିକୁ ନିୟନ୍ତ୍ରଣ କରିବା ଏବଂ ସଂଯମତା ଆଚରଣ କରିବାର ଇସ୍‌ଲାମରେ ଶିକ୍ଷା ଦିଆଯାଇଛି । କ୍ରୋଧ ସମୟରେ ମନୁଷ୍ୟ ଭଲ-ମନ୍ଦର ବିଚାରଶକ୍ତି ହରାଏ । ତେଣୁ କ୍ରୋଧ ସମ୍ବରଣ କରିବା ଏବଂ ଦୁଃଖ ବିପଦରେ ଧୈର୍ଯ୍ୟହରା ନ ହୋଇ ଅଲ୍ଲାହ୍‌ଙ୍କ ଉପରେ ଭରସା ରଖିବା ଜଣେ ନୈଷ୍ଠିକ ମୁସଲମାନର ବୈଶିଷ୍ଟ୍ୟ । ପବିତ୍ର କୁର୍‌ଆନରେ ଅଲ୍ଲାହ୍ କହିଛନ୍ତି :



ଯେଉଁମାନେ ସ୍ୱଚ୍ଛଳ ଅବସ୍ଥାରେ ଏବଂ ଦୁଃଖ-ଦୁର୍ଦ୍ଦଶାରେ ମଧ୍ୟ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ନିଜ ଧନ ଖର୍ଚ୍ଚ କରନ୍ତି ଏବଂ ଯେଉଁମାନେ କ୍ରୋଧ ସମ୍ବରଣ କରନ୍ତି ଓ ଅନ୍ୟମାନଙ୍କୁ କ୍ଷମା କରନ୍ତି, ଏଭଳି ପୁଣ୍ୟବାନ୍ ଲୋକଙ୍କୁ ଅଲ୍ଲାହ୍ ପ୍ରେମ କରନ୍ତି ।"

କୁର୍‌ଆନ ୩ : ୧୩୪

ନିଜ କ୍ରୋଧକୁ ନିୟନ୍ତ୍ରିତ କରିପାରୁଥିବା ବ୍ୟକ୍ତି ହିଁ ସର୍ବାଧିକ ଶକ୍ତିଶାଳୀ ବୋଲି ବର୍ଣ୍ଣନା କରି ଅଲ୍ଲାହ୍‌ଙ୍କର ଧର୍ମଦୂତ ମହାମାନ୍ୟ ମୁହମ୍ମଦ କହିଛନ୍ତି :

---

\+ ଦେଖନ୍ତୁ— ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ୍ ୧୧୭
ସହୀ ବୁଖାରୀ, ୩ୟ ଖଣ୍ଡ, ହଦିସ୍ ୮୪୭
ସହୀ ବୁଖାରୀ, ୧ମ ଖଣ୍ଡ, ହଦିସ୍ ୩୨

''ନିଜ ବାହୁବଳ ଦ୍ୱାରା ଲୋକଙ୍କୁ ପରାସ୍ତ କରି ଦେଉଥିବା ବ୍ୟକ୍ତି ଶକ୍ତିଶାଳୀ ନୁହେଁ, ବରଂ ଶକ୍ତିଶାଳୀ ପ୍ରକୃତରେ ସିଏ, ଯିଏ କ୍ରୋଧ ସମୟରେ ନିଜକୁ ନିୟନ୍ତ୍ରଣ କରିପାରେ ।''

ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ୍ ୧୩୫+

## ♦ ପରନିନ୍ଦା ଓ ଚୁଗୁଲି

ଜଣେ ବ୍ୟକ୍ତିର ଅନୁପସ୍ଥିତିରେ ତା' ବିରୁଦ୍ଧରେ କୁତ୍ସାରଟନା କରିବା ଇସ୍‌ଲାମରେ ନିଷିଦ୍ଧ । ପରନିନ୍ଦା ଓ ଚୁଗୁଲିକୁ ଇସ୍‌ଲାମ ମହାପାପ ବିବେଚନା କରେ ।

ପ୍ରତ୍ୟେକ ବ୍ୟକ୍ତି ନିଜ ଦୋଷ-ଦୁର୍ବଳତାଗୁଡ଼ିକୁ ଅନ୍ୟଠାରୁ ଲୁଚାଇବାକୁ ଚାହେଁ । କେହି ନିଜର ମାନ-ସମ୍ମାନ ଓ ସାମାଜିକ ପ୍ରତିଷ୍ଠାକୁ ବିପନ୍ନ କରିବା ପସନ୍ଦ କରନ୍ତି ନାହିଁ । ଅନ୍ୟ ସମ୍ମୁଖରେ ଦୋଷ ଦୁର୍ବଳତା ପ୍ରକାଶ ହୋଇଯିବା ଦ୍ୱାରା ମଣିଷକୁ ବହୁତ କଷ୍ଟ ହୁଏ । ତାକୁ ଲାଗେ ସତେଯେପରି ଲୋକମାନଙ୍କ ସମ୍ମୁଖରେ ତାକୁ ଉଲଗ୍ନ କରିଦିଆଯାଇଛି । ଯେପରି କେହି ଆମର ନିନ୍ଦା ବା ଚୁଗୁଲି କଲେ ଆମକୁ କଷ୍ଟ ହୁଏ, ସେହିପରି ଅନ୍ୟମାନଙ୍କୁ ମଧ୍ୟ ହୁଏ । ପରନିନ୍ଦା, ଚୁଗୁଲି, କୁତ୍ସାରଟନା ଦ୍ୱାରା ପରସ୍ପର ମଧ୍ୟରେ ଘୃଣା ଓ ବିଦ୍ୱେଷଭାବ ସୃଷ୍ଟି ହୁଏ ଏବଂ ଅନେକ ସମୟରେ ଏହା ସାଂଘାତିକ ବିବାଦ ଆଡ଼କୁ ମଧ୍ୟ ଗତି କରେ । ଏଣୁ ଇସ୍‌ଲାମ ଏଗୁଡ଼ିକୁ ନିଷିଦ୍ଧ କରି କହିଛି :

''ପର ଛିଦ୍ର ଅନ୍ୱେଷଣ କରନାହିଁ କିମ୍ବା ତୁମ୍ଭମାନଙ୍କ ମଧ୍ୟରେ କେହି କାହାରି ଚୁଗୁଲି ନ କରୁ ।''

କୁର୍‌ଆନ ୪୯ : ୧୨

କୌଣସି ନିରୀହ ବା ନିର୍ଦ୍ଦୋଷ ବ୍ୟକ୍ତି ପ୍ରତି ମିଥ୍ୟାରୋପ କରି ତାର କୁତ୍ସାରଟନା କରିବା ଆହୁରି ସଙ୍ଗୀନ୍ ଅପରାଧ ।+୧

ମଣିଷ ମାତ୍ରକେ ପ୍ରାୟ ସମସ୍ତଙ୍କର କିଛି ନା କିଛି ଦୋଷ ଦୁର୍ବଳତା ଥାଏ । ଆମେ ଏହା ସ୍ୱୀକାର କରିବା ଉଚିତ୍ । ଯଦି ଆମେ ଦୋଷଶୂନ୍ୟ ବନ୍ଧୁ ବା

---

\+ ଦେଖନ୍ତୁ–ସହୀ ମୁସଲିମ୍, ହଦିସ୍ ୬୩୧୩

+୧ ସହୀ ମୁସଲିମ୍, ହଦିସ୍ ୬୨୬୫

ଆତ୍ମୀୟସ୍ୱଜନ ଖୋଜିବା, ତେବେ ସେପରି ଲୋକ ଆମକୁ ଆଦୌ ମିଳିବେ ନାହିଁ । ଏପରି ସ୍ଥଳେ ଆମକୁ ସମ୍ପୂର୍ଣ୍ଣ ଏକୁଟିଆ ରହିବାକୁ ପଡ଼ିବ, ଯାହା ସମ୍ଭବ ନୁହେଁ ।

## ♦ ଅହଂକାର

ଗର୍ବ ଅହଂକାର ମଣିଷକୁ ଅନ୍ୟ ନିକଟରେ ଅତି ନ୍ୟୂନ କରିଦିଏ । କୌଣସି ସଭ୍ୟ ସମାଜ ଅହଂକାରୀ ବ୍ୟକ୍ତିକୁ ସମ୍ମାନ କରେନାହିଁ, ବରଂ ଘୃଣା କରେ । ଈଶ୍ୱର ମଧ କୌଣସି ଅହଂକାରୀକୁ ପସନ୍ଦ କରନ୍ତି ନାହିଁ । କୁର୍‌ଆନ କହିଛି :

"ଅଲ୍ଲାହ୍ କୌଣସି ଦାମ୍ଭିକ ଓ ଅହଂକାରୀକୁ ପସନ୍ଦ କରନ୍ତି ନାହିଁ ।"

କୁର୍‌ଆନ ୩୧ : ୧୮

ଅନ୍ୟ ଏକ ସ୍ଥାନରେ ଆଦେଶ ଦିଆଯାଇଛି :

"ଦାମ୍ଭିକତାର ସହ ପୃଥିବୀପୃଷ୍ଠରେ ଚାଲ ନାହିଁ, (କାରଣ ଏହାଦ୍ୱାରା) ତୁମେ ପୃଥିବୀକୁ ବିଦୀର୍ଣ୍ଣ କରିପାରିବ ନାହିଁ କିମ୍ବା ପାହାଡ଼ର ଉଚ୍ଚତାକୁ ପହଞ୍ଚିପାରିବ ନାହିଁ ।"

କୁର୍‌ଆନ ୧୭ : ୩୭



## ♦ ଋଣଗ୍ରସ୍ତ ପ୍ରତି ଉଦାରତା

ଇସଲାମ ଋଣ ଭାରରେ ବୁଡ଼ିଥିବା ଲୋକମାନଙ୍କ ପ୍ରତି ଅତିଶୟ ଦୟା ପ୍ରଦର୍ଶନ କରିବାର ଶିକ୍ଷା ଦିଏ । ଯଦି ଋଣଗ୍ରସ୍ତର କିଛି ଅସୁବିଧା ଅଛି, ତାକୁ ଋଣ ପରିଶୋଧ ପାଇଁ ଅଧିକ ସମୟ ଦିଆଯିବା ଉଚିତ କିମ୍ବା ସମ୍ପୂର୍ଣ୍ଣ ଋଣକ୍ଷମା କରିଦେବା ଉଚିତ । ଏହି ମହାନ୍ ଶିକ୍ଷା ଦେଇ କୁର୍‌ଆନ କହିଛି :

"ଯଦି କୌଣସି ଋଣଗ୍ରହୀତା ଅଭାବଗ୍ରସ୍ତ ଥାଏ, ତେବେ ସେ ସମର୍ଥ ହେବା ପର୍ଯ୍ୟନ୍ତ ତାକୁ ଅବସର ଦିଅ ଏବଂ ଯଦି ତୁମେ (ମୂଳଧନ) ଦାନ ରୂପେ ଛାଡ଼ିଦିଅ, ତେବେ ତାହା ତୁମମାନଙ୍କ ପକ୍ଷରେ ଏକ ମହତ୍ କାର୍ଯ୍ୟ ହେବ, ଯଦି ତୁମ୍ଭେମାନେ ବୁଝିପାର ।"

କୁର୍‌ଆନ ୨ : ୨୮୦

ଅଲ୍ଲାହ୍‌ଙ୍କ ଧର୍ମଦୂତ କହିଲେ :

"ଜଣେ ବ୍ୟକ୍ତି ଲୋକମାନଙ୍କୁ ଟଙ୍କା ପଇସା କରଜ ଦିଏ ଏବଂ ସେ ନିଜ କର୍ମଚାରୀକୁ କହେ–ଯଦି ଋଣଗ୍ରହୀତା ଦରିଦ୍ର ଥାଏ, ତା' ଋଣ କ୍ଷମା କରିଦିଅ, ଯାହା ଫଳରେ ହୁଏତ ଅଲ୍ଲାହ୍ ଆମକୁ କ୍ଷମା କରିଦେବେ । ସୁତରାଂ ଯେତେବେଳେ (ମୃତ୍ୟୁ ପରେ) ସେ ଅଲ୍ଲାହ୍‌ଙ୍କ ସହ ସାକ୍ଷାତ୍ କଲା, ଅଲ୍ଲାହ୍ ତାକୁ କ୍ଷମା କରିଦେଲେ ।"

ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ୬୮୭

## ♦ କ୍ଷମା

ଲୋକମାନଙ୍କ ପ୍ରତି ଉଦାର ମନୋଭାବ ରଖିବା ଏବଂ ଅନ୍ୟର ଦୋଷତ୍ରୁଟି କ୍ଷମା କରିଦେବା ମହାନ୍ ବ୍ୟକ୍ତିମାନଙ୍କର ଲକ୍ଷଣ । ପବିତ୍ର କୁର୍‌ଆନ କହିଛି :

"ଯେଉଁମାନେ କ୍ରୋଧ ସମ୍ବରଣ କରନ୍ତି ଓ ଅନ୍ୟମାନଙ୍କୁ କ୍ଷମା କରନ୍ତି ଏଭଳି ପୁଣ୍ୟବାନ୍ ଲୋକଙ୍କୁ ଅଲ୍ଲାହ୍ ପ୍ରେମ କରନ୍ତି ।"

କୁର୍‌ଆନ ୩ : ୧୩୪



କୁର୍‌ଆନରେ ଈଶ୍ୱର ଏହା ମଧ୍ୟ ଉପଦେଶ ଦେଇଛନ୍ତି :

"ପାପ ଓ ପୁଣ୍ୟ ସମାନ ହୋଇନପାରେ । ତୁମେ ମନ୍ଦକାର୍ଯ୍ୟର ପ୍ରତ୍ୟୁତ୍ତର ଅତି ଉତ୍ତମ ବ୍ୟବହାର ଦ୍ୱାରା ଦିଅ, ଯାହା ଫଳରେ ଯେଉଁ ବ୍ୟକ୍ତିର ତୁମ ସହ ଶତ୍ରୁତା ଥିଲା, ସେ ତୁମର ଅନ୍ତରଙ୍ଗ ବନ୍ଧୁ ହୋଇଯିବ ।"

କୁର୍‌ଆନ ୪୧ : ୩୪

ଦଣ୍ଡ ଦେବାର ଶକ୍ତି ଥିଲେ ସୁଦ୍ଧା ମହାମାନ୍ୟ ମୁହମ୍ମଦ ଲୋକମାନଙ୍କୁ କ୍ଷମା କରିଦେଉଥିଲେ । ଥରେ ଜଣେ ବେଦୁଇନ୍ ବ୍ୟକ୍ତି ମସ୍‌ଜିଦ୍‌ରେ ପରିସ୍ରା କରିବା ପାଇଁ ବସି ପଡ଼ିଲା । ତେଣୁ ଲୋକେ ତାକୁ ମାରିବାକୁ ଉଦ୍ୟତ ହେଲେ । କିନ୍ତୁ ମହାମାନ୍ୟ ମୁହମ୍ମଦ ସେମାନଙ୍କୁ ବାରଣ କରି କହିଲେ ଯେ, ତାକୁ ପରିସ୍ରା

କରିବାକୁ ଦିଅ । ସେ ବ୍ୟକ୍ତି ପରିସ୍ରା କରିସାରିବା ପରେ ମହାମାନ୍ୟ ଧର୍ମଦୂତ ବାଲ୍‌ଟିରେ ପାଣି ମଗାଇ ସେ ଜାଗା ଧୋଇଦେଲେ ।+ ଏଥିରୁ ମହାମାନ୍ୟ ଧର୍ମଦୂତଙ୍କ ଉଦାରତାର ପରିଚୟ ମିଳେ ।

## ♦ ସହୃଦୟତା

ଅନ୍ୟ ପ୍ରତି ଦୟା ପ୍ରଦର୍ଶନ କରିବା ଏକ ଆଦର୍ଶ ମାନବୀୟ ମୂଲ୍ୟବୋଧ । ଦୟା, କ୍ଷମା, ପ୍ରେମ, କରୁଣା ଆଦି ଇସ୍‌ଲାମର ମୌଳିକ ଶିକ୍ଷା । ଈଶ୍ୱରଙ୍କର ଧର୍ମଦୂତ ମହାମାନ୍ୟ ମୁହମ୍ମଦ କହିଛନ୍ତି :

"ଯିଏ ଅନ୍ୟ ପ୍ରତି ଦୟା କରେ ନାହିଁ, ତା' ପ୍ରତି ମଧ୍ୟ ଦୟା କରାଯିବ ନାହିଁ ।"

ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ୍ ୪୨

"ଦୟାମୟ ଦୟାଳୁମାନଙ୍କ ପ୍ରତି ଦୟା କରନ୍ତି । ତୁମେ ମର୍ତ୍ତ୍ୟବାସୀଙ୍କ ପ୍ରତି ଦୟା କର, ସେ ତୁମ ପ୍ରତି ଦୟା କରିବେ ଯିଏ ସ୍ୱର୍ଗ ଉପରେ ଅବସ୍ଥାନ କରନ୍ତି ।"

ତିରମିଜୀ, ୪ର୍ଥ ଖଣ୍ଡ, ହଦିସ୍-୧୯୨୪

ଜଣେ ନିଷ୍ଠାପର ମୁସଲମାନ ସମସ୍ତଙ୍କ ପ୍ରତି ଦୟାଭାବ ରଖେ । ମହାମାନ୍ୟ ଧର୍ମଦୂତ ମସ୍‌ଜିଦରେ ନମାଜ ପଢ଼ାଉଥିବା ସମୟରେ ଯଦି କୌଣସି ଛୋଟପିଲା କାନ୍ଦିବାର ଶୁଣନ୍ତି, ତେବେ ତା' ମା' ପ୍ରତି ତାଙ୍କୁ ଦୟା ଆସେ । ପିଲା କାନ୍ଦିବା ଦ୍ୱାରା ନମାଜରେ ଠିଆ ହୋଇଥିବା ତା' ମା' କାଳେ ବ୍ୟସ୍ତ ହେବ, ଏହା ଭାବି ସେ ନମାଜ ସଂକ୍ଷିପ୍ତ କରିଦିଅନ୍ତି ।+୧

ଇସ୍‌ଲାମ ପଶୁପକ୍ଷୀଙ୍କ ପ୍ରତି ମଧ୍ୟ ଦୟା ପ୍ରଦର୍ଶନ କରିବାର ଶିକ୍ଷା ଦେଇଛି । ମହାମାନ୍ୟ ମୁହମ୍ମଦ କହିଛନ୍ତି :

"ଯଦି ଜଣେ ମୁସଲମାନ ବୃକ୍ଷରୋପଣ କରେ କିମ୍ବା ଶସ୍ୟ ବୁଣେ ଏବଂ ତହିଁରୁ କୌଣସି ପଶୁ, ପକ୍ଷୀ ବା ମନୁଷ୍ୟ ଖାଦ୍ୟ ପାଆନ୍ତି,

---

+ ସହୀ ବୁଖାରୀ, ୮ମ ଖଣ୍ଡ, ହଦିସ୍ ୫୪ ଏବଂ ୧୪୯

+୧ ସହୀ ବୁଖାରୀ, ୧ମ ଖଣ୍ଡ, ହଦିସ୍ ୮୨୭

ତେବେ ତାର ଏହି କର୍ମ ଈଶ୍ୱରଙ୍କ ନିକଟରେ 'ଦାନ' ରୂପେ ବିବେଚିତ ହୁଏ ।''

**ସହୀ ବୁଖାରୀ, ୩ୟ ଖଣ୍ଡ, ହଦିସ୍ ୫୧୩**

ଈଶ୍ୱରଙ୍କ ଧର୍ମଦୂତ ଏହା ମଧ୍ୟ କହିଲେ :

''ଜଣେ ବ୍ୟକ୍ତିକୁ ବାଟରେ ଯାଉଥିବା ସମୟରେ ପ୍ରବଳ ଶୋଷ ହେଲା ଏବଂ ସେ ଗୋଟିଏ କୂଅ ମଧ୍ୟରେ ପ୍ରବେଶ କରି ପାଣି ପିଇଲା । କୂଅରୁ ପାଣି ପିଇସାରି ବାହାରିବା ପରେ ସେ ଦେଖିଲା ଯେ ଗୋଟିଏ କୁକୁର ପ୍ରବଳ ଶୋଷରେ ବିକଳ ହୋଇ କାଦୁଅ ଖାଇଯାଉଛି, ଲୋକଟି ମନକୁ ମନ କହିଲା, 'ଏ କୁକୁରଟି ଠିକ୍ ସେଇଭଳି କଷ୍ଟ ଭୋଗୁଛି ଯେମିତି କିଛି ସମୟ ପୂର୍ବେ ମୁଁ ଭୋଗୁଥିଲି ।' ସୁତରାଂ ସେ ପୁଣି କୂଅ ଭିତରେ ପଶିଲା, ନିଜ ଜୋତାରେ ପାଣି ଭର୍ତ୍ତି କରି ତାକୁ ପାଟିରେ କାମୁଡ଼ି ଧରି କୂଅରୁ ବାହାରି ଆସିଲା, ତାପରେ ସେ ଶୋଷିଲା କୁକୁରଟିକୁ ପାଣି ପିଆଇଲା । ଅଲ୍ଲାହ୍ ସେଇ ବ୍ୟକ୍ତିଟିର ଏହି କର୍ମ ଯୋଗୁଁ ଅତି ପ୍ରସନ୍ନ ହେଲେ ଏବଂ ତାର ସମସ୍ତ ପାପ କ୍ଷମା କରିଦେଲେ । ଏହା ଶୁଣି ଉପସ୍ଥିତ ଲୋକମାନେ ପ୍ରଶ୍ନ କଲେ–'ହେ ଈଶ୍ୱରଙ୍କ ଧର୍ମଦୂତ ! କ'ଣ ପଶୁମାନଙ୍କ ସେବାରେ ମଧ୍ୟ ଆମକୁ ପୁଣ୍ୟ ମିଳିବ ?' ମହାମାନ୍ୟ ଧର୍ମଦୂତ ଉତ୍ତର ଦେଲେ–ହଁ, ପ୍ରତ୍ୟେକ ପ୍ରାଣୀର ସେବାରେ ପୁଣ୍ୟ ମିଳେ ।''

**ସହୀ ବୁଖାରୀ, ୩ୟ ଖଣ୍ଡ, ହଦିସ୍ ୫୫୧**

ଜୀବଜନ୍ତୁଙ୍କ ପ୍ରତି ନିର୍ଦ୍ଦୟ ହେବା ଏକ ମହାନ୍ ପାପ କାର୍ଯ୍ୟ ବୋଲି ସତର୍କ କରି ମହାମାନ୍ୟ ମୁହମ୍ମଦ କହିଲେ :

''ଜଣେ ସ୍ତ୍ରୀ ଲୋକକୁ ଏଇଥିପାଇଁ ଦଣ୍ଡିତ କରାଗଲା ଯେ, ସେ ଗୋଟିଏ ବିରାଡ଼ିକୁ ବାନ୍ଧି ରଖିଥିବା ଯୋଗୁଁ ତା'ର ମୃତ୍ୟୁ ହୋଇଗଲା । ସେ ତାକୁ ଖାଇବା-ପିଇବାକୁ ଦେଇ ନଥିଲା

କିମ୍ବା ଖାଦ୍ୟ ଆହରଣ ପାଇଁ ତାକୁ ବାହାରକୁ ମଧ୍ୟ ଛାଡ଼ି ନଥିଲା, ଯଦ୍ଵାରା ସେ (ସ୍ତ୍ରୀଲୋକ ଜଣକ) ନର୍କଗାମୀ ହେଲା ।''

**ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ୬୮୯**

ଅନ୍ୟାୟରେ ପିମ୍ପୁଡ଼ିଟିକୁ ମାରିଦେଲେ ମଧ୍ୟ ଈଶ୍ୱର ଅସନ୍ତୁଷ୍ଟ ହୁଅନ୍ତି । କୌଣସି ଏକ ଯୁଗର ଘଟଣା ବର୍ଣ୍ଣନା କରି ମହାମାନ୍ୟ ମୁହମ୍ମଦ କହିଲେ :

''ଥରେ ଈଶ୍ୱରଙ୍କର ଜଣେ ଧର୍ମଦୂତ ଗୋଟିଏ ଗଛ ମୂଳେ ବିଶ୍ରାମ ନେଉଥାଆନ୍ତି । ପିମ୍ପୁଡ଼ିଟିଏ ତାଙ୍କୁ କାମୁଡ଼ି ଦେଲା । ତେଣୁ ସେ ତାଙ୍କ (ଶିଷ୍ୟମାନଙ୍କୁ) ଜିନିଷପତ୍ର ସେଠାରୁ ଅନ୍ୟତ୍ର ଉଠାଇନେବା ପାଇଁ ଏବଂ ପିମ୍ପୁଡ଼ିମାନଙ୍କ ବସାରେ ନିଆଁ ଲଗାଇଦେବା ପାଇଁ ଆଦେଶ ଦେଲେ । ଅଲ୍ଲାହ୍ ତାଙ୍କ ପ୍ରତି ଦୈବୀବାଣୀ କଲେ ''ଗୋଟିଏ ପିମ୍ପୁଡ଼ିକୁ ପୋଡ଼ିଦେବା ଯଥେଷ୍ଟ ନଥିଲା କି ?'' (ଅର୍ଥାତ୍, ଗୋଟିଏ ପିମ୍ପୁଡ଼ି ତ ତୁମକୁ କାମୁଡ଼ିଲା, ତୁମେ ମୋର ଏତେଗୁଡ଼ିଏ ପିମ୍ପୁଡ଼ିଙ୍କୁ କାହିଁକି ମାରିଦେଲ ?)''

**ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ୫୩୬**

ଅତ୍ୟନ୍ତ ଦୁଃଖର କଥା, ଯେଉଁ ଧର୍ମ ପଶୁ-ପକ୍ଷୀ ଓ ମନୁଷ୍ୟମାନଙ୍କ ହିତ ପାଇଁ ବୃକ୍ଷରୋପଣ କରିବାର ଶିକ୍ଷା ଦିଏ, ଯେଉଁ ଧର୍ମରେ ଶୋଷିଲା କୁକୁରଟିକୁ ପାଣି ପିଆଇଦେଲେ ବୈକୁଣ୍ଠ ପ୍ରାପ୍ତି ମଧ୍ୟ ହୋଇପାରେ, ଯେଉଁ ଧର୍ମରେ ଗୋଟିଏ ବିରାଡ଼ିକୁ ଭୋକ ଉପାସରେ ବାନ୍ଧିରଖି ମାରିଦେଲେ ଜଣେ ବ୍ୟକ୍ତିକୁ ନର୍କ ଦଣ୍ଡ ଦିଆଯାଇପାରେ ଏବଂ ଯେଉଁ ଧର୍ମରେ ସାମାନ୍ୟ ପିମ୍ପୁଡ଼ିକୁ ଅକାରଣରେ ମାରିଦେବା ଯୋଗୁଁ ଇସ୍ଲାମର ଧର୍ମପ୍ରବର୍ତ୍ତକଙ୍କୁ ମଧ୍ୟ ସାବଧାନ କରାଇ ଦିଆଯାଏ, ଏଭଳି ଏକ ଧର୍ମ ବିଷୟରେ ଏମିତି ଧାରଣା ରଖିବା ଯେ, ଏହା ନିକଟରେ ସଂସାରର ଶ୍ରେଷ୍ଠ ପ୍ରାଣୀ 'ମାନବ' ଜୀବନର କୌଣସି ମୂଲ୍ୟ ନାହିଁ, ଏହାଠାରୁ ବଳି ଦୁଃଖର କଥା ଜଣେ ମୁସଲମାନ ପାଇଁ ଆଉ କ'ଣ ହୋଇପାରେ ?



# ଇସ୍‌ଲାମ ମାନବସମସ୍ୟାର ପ୍ରତିକାରକ

ଧର୍ମ ମାନବ କଲ୍ୟାଣ ପାଇଁ ଉଦ୍ଦିଷ୍ଟ । ତେଣୁ ସେଥିରେ ମାନବ ସମସ୍ୟାଗୁଡ଼ିକର ବିହିତ ପ୍ରତିକାର ବ୍ୟବସ୍ଥା ଅବଶ୍ୟ ରହିବା ଉଚିତ । ଇସ୍‌ଲାମ ଏକ ପରିପୂର୍ଣ୍ଣ ଜୀବନ-ବ୍ୟବସ୍ଥା । ତେଣୁ ଏଥିରେ ଜଗତ-ବାସୀଙ୍କ ସବୁପ୍ରକାର ସମସ୍ୟା, ଯଥା—ଦାରିଦ୍ର୍ୟ, ଦୁର୍ନୀତି, ବ୍ୟଭିଚାର ଆଦିର ସମାଧାନ ରହିଛି । ପ୍ରତ୍ୟେକ ଅପରାଧର ନିରାକରଣ ଏବଂ ପ୍ରତ୍ୟେକ ସମସ୍ୟାର ସମାଧାନ ପାଇଁ ଏହା ପରିପୂର୍ଣ୍ଣ ପ୍ରତିକାର ପ୍ରଦାନ କରେ । ଉଦାହରଣ ସ୍ୱରୂପ, ଆମେ ବର୍ତ୍ତମାନ ଗୋଟିଏ ସମସ୍ୟା ଏବଂ ତାର ପ୍ରତିକାର ସମ୍ପର୍କରେ ଆଲୋଚନା କରିବା, ଯଥା—ବ୍ୟଭିଚାର । ବୈବାହିକ ପରିସର ବହିର୍ଭୂତ ଅନୈତିକ ଶାରୀରିକ ସମ୍ବନ୍ଧ ଏକ ଉତ୍କଟ ସାମାଜିକ ସମସ୍ୟା । ସମସ୍ତ ପ୍ରମୁଖ ଧର୍ମଶାସ୍ତ୍ରମାନଙ୍କରେ ବ୍ୟଭିଚାରକୁ ମହାପାପ ବୋଲି ବର୍ଣ୍ଣନା କରାଯାଇଛି । ଏହି ଅପରାଧରୁ ସମାଜକୁ ମୁକ୍ତ ରଖିବା ପାଇଁ ନିଜ ନିଜ ଧର୍ମଶାସ୍ତ୍ରରେ ଥିବା ବ୍ୟବସ୍ଥା ସମ୍ପର୍କରେ ସମସ୍ତେ ଅବଗତ । ବିଶ୍ୱର ବିଭିନ୍ନ ଦେଶରେ ଏଥିପାଇଁ କ'ଣ ଆଇନ୍ କାନୁନ୍ ରହିଛି, ତାହା ମଧ୍ୟ ଅନୁସନ୍ଧାନ କରାଯାଇପାରେ । ଏବେ ଆମେ ଇସ୍‌ଲାମର ପ୍ରତିକାର ବ୍ୟବସ୍ଥା ଦେଖିବା—

- ଇସ୍‌ଲାମ ଦୈନିକ ନମାଜ ଏବଂ କୁର୍‌ଆନ ପାଠ ମାଧ୍ୟମରେ ତା' ଅନୁଗାମୀ ହୃଦୟରେ ଈଶ୍ୱରଙ୍କ ଭୟ ସୃଷ୍ଟି କରେ । ଈଶ୍ୱର ତା'ର ସମସ୍ତ କାର୍ଯ୍ୟକଳାପ ଦେଖୁଛନ୍ତି ଏବଂ ସେ ତାଙ୍କ ନିକଟରେ ନିଜର ପ୍ରତ୍ୟେକ କର୍ମ ପାଇଁ ଉତ୍ତରଦାୟୀ, ଏହା ତାକୁ ବାରମ୍ବାର ସ୍ମରଣ କରାଉଥାଏ । ଏହି ଜାଗ୍ରତ ପ୍ରହରୀ ଏକାନ୍ତରେ ମଧ୍ୟ ମଣିଷକୁ ପାପ କାର୍ଯ୍ୟରୁ ନିବୃତ୍ତ ରଖିବାରେ ସାହାଯ୍ୟ କରେ ।

- ଇସ୍‌ଲାମ ଧର୍ମ ବ୍ୟବସ୍ଥାର ଏକ ମୁଖ୍ୟ ବୈଶିଷ୍ଟ୍ୟ ହେଉଛି ଯେ, ଯେଉଁ କର୍ମକୁ ଏହା ଅବୈଧ ବା ହରାମ ଘୋଷଣା କରେ, ତା' ନିକଟରେ

ପହଞ୍ଚିବାର ସବୁ ପଥଗୁଡ଼ିକୁ ମଧ୍ୟ ରୁଦ୍ଧ କରିଦିଏ । ଏହି ସୂତ୍ର ଅନୁସାରେ ବ୍ୟଭିଚାରର ସମସ୍ତ ମାଧ୍ୟମଗୁଡ଼ିକୁ ମଧ୍ୟ ଇସ୍‌ଲାମରେ ନିଷିଦ୍ଧ କରାଯାଇଛି । ଅଶ୍ଳୀଳତାର ପ୍ରସାର କରୁଥିବା ସମସ୍ତ ପୁସ୍ତକ, ଚିତ୍ର, ଚଳଚ୍ଚିତ୍ର ଏବଂ ନୃତ୍ୟଗୀତ ଆଦି ନିଷିଦ୍ଧ କରାଯାଇଛି । ବୁଦ୍ଧିଭ୍ରଷ୍ଟକାରୀ ନିଶାଦ୍ରବ୍ୟ ଯଥା–ମଦ ଏବଂ ଡ୍ରଗ୍‌ସ ଇତ୍ୟାଦି ମଧ୍ୟ ନିଷିଦ୍ଧ । ନିଷିଦ୍ଧ ସାମଗ୍ରୀର ପ୍ରସ୍ତୁତି ଏବଂ ବ୍ୟବସାୟ ମଧ୍ୟ ନିଷିଦ୍ଧ ।

- ମହିଳାମାନଙ୍କର ଅଶାଳୀନ ବସ୍ତ୍ର ପରିଧାନ ଏବଂ ଅଙ୍ଗ ପ୍ରଦର୍ଶନ ପୁରୁଷମାନଙ୍କ ନୈତିକ ସ୍ଖଳନ ପାଇଁ ବିଶେଷ ଭାବରେ ଦାୟୀ । ଇସ୍‌ଲାମ ଉଭୟ ପୁରୁଷ ଏବଂ ନାରୀଙ୍କୁ ମର୍ଯ୍ୟାଦାପୂର୍ଣ୍ଣ ବସ୍ତ୍ର ପରିଧାନ କରିବା ପାଇଁ ଏବଂ ଶରୀରର ନିର୍ଦ୍ଦିଷ୍ଟ ଅଙ୍ଗଗୁଡ଼ିକୁ ବସ୍ତ୍ରାବୃତ୍ତ ରଖିବା ପାଇଁ ଆଦେଶ ଦେଇଛି । ଇସ୍‌ଲାମରେ ନାରୀର ମର୍ଯ୍ୟାଦା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ନାରୀର ଦୁର୍ବଳତା ପାଇଁ ନୁହେଁ, ବରଂ ପୁରୁଷମାନଙ୍କର ଦୁର୍ବଳତା ଯୋଗୁଁ ନାରୀମାନଙ୍କୁ ଅଙ୍ଗପ୍ରଦର୍ଶନ ପାଇଁ ବାରଣ କରାଯାଇଛି । କୁଦୃଷ୍ଟି ଏବଂ ଦୁର୍ବ୍ୟବହାରରୁ ସେମାନଙ୍କୁ ସୁରକ୍ଷା ପ୍ରଦାନ କରିବା ଇସ୍‌ଲାମର ଉଦ୍ଦେଶ୍ୟ ।
- କେତେକ ନିର୍ଦ୍ଦିଷ୍ଟ ଆତ୍ମୀୟଙ୍କୁ ବାଦ୍ ଦେଇ ନାରୀ ଓ ପୁରୁଷଙ୍କର ଅବାଧ ମିଳାମିଶାକୁ ନିଷିଦ୍ଧ କରାଯାଇଛି ।
- ଇସ୍‌ଲାମ ବିବାହ ବିଧିକୁ ଅତି ସରଳ କରିଛି ଯାହାଦ୍ୱାରା ବିବାହ ଏକ କଷ୍ଟକର ବ୍ୟାପାର ନ ହେଉ ଏବଂ ବ୍ୟକ୍ତି ଅବୈଧ ପନ୍ଥା ଅବଲମ୍ବନ ନ କରୁ । କନ୍ୟା ପିତା ଉପରେ ଯୌତୁକ ବା ଭୋଜିଭାତର ବୋଝ ମଧ୍ୟ ରଖାଯାଇ ନାହିଁ ।
- ବିବାହ ଯୋଗ୍ୟ ଯୁବକ-ଯୁବତୀଙ୍କ ବିବାହରେ ଅଯଥା ବିଳମ୍ବ ନ କରିବା ଏବଂ ବିବାହଯୋଗ୍ୟା ବିଧବାମାନଙ୍କର ପୁନର୍ବିବାହର ବ୍ୟବସ୍ଥା କରିବାର ଆଦେଶ ଦିଆଯାଇଛି ।

ସମାଜକୁ ବ୍ୟଭିଚାର ମୁକ୍ତ ରଖିବା ପାଇଁ ଏ ସମସ୍ତ ପ୍ରଯତ୍ନ କରିବାପରେ ଇସ୍‌ଲାମର ଅନ୍ତିମ ଉପଚାର ହେଉଛି ଦୃଷ୍ଟାନ୍ତମୂଳକ ଦଣ୍ଡବିଧାନ, ଅର୍ଥାତ୍ ଦୁଷ୍ଟ

ବ୍ୟଭିଚାରୀକୁ ସର୍ବସାଧାରଣରେ ପଥର ମାରି ବଧ କରିଦେବାର ଭୟଙ୍କର ଦଣ୍ଡବିଧାନ ବ୍ୟବସ୍ଥା । ଏହି ଲୋମହର୍ଷଣକାରୀ ଦଣ୍ଡ ଦେଖୁଥିବା ଦର୍ଶକମାନେ ଏଭଳି ଅପରାଧର କଳ୍ପନା ମଧ୍ୟ କରିପାରିବେ ନାହିଁ । କେତେକଙ୍କୁ ଏହା ଅମାନବୀୟ ଦଣ୍ଡ ଜଣାପଡ଼ିପାରେ । ଅନ୍ୟମାନଙ୍କ ଝିଅ ବୋହୂଙ୍କ ପ୍ରତି ବଳାତ୍କାର ପାଇଁ ଦଣ୍ଡଟା ଅମାନବୀୟ ମନେହେଉଛି, ଯାହା ସ୍ୱାଭାବିକ । କିନ୍ତୁ ଯଦି ଆମ ନିଜର ସ୍ତ୍ରୀ ବା କନ୍ୟା ପ୍ରତି କେହି ବଳାତ୍କାର କରେ, ତେବେ ବୋଧହୁଏ ଆମେ ବଳାତ୍କାରୀକୁ ଏହାଠାରୁ ଅଧିକ କଠୋର ଦଣ୍ଡ ଦେବା ପସନ୍ଦ କରିବା । ଗୋଟିଏ ଦୁଷ୍ଟ ପ୍ରତି ଦୟା କରି ତାକୁ ଛାଡ଼ିଦେଲେ ଗୋଟିଏ ସମାଜର ସ୍ଥିତି ସଙ୍କଟାପନ୍ନ ହୋଇପଡ଼େ । ବାଘ ପ୍ରତି ଦୟାକରିବା ଅର୍ଥ ଛେଳିମାନଙ୍କ ପ୍ରତି ଅତ୍ୟାଚାର । କୋହଳ ଦଣ୍ଡବ୍ୟବସ୍ଥା ଅପରାଧ ବୃଦ୍ଧିର ଅନ୍ୟତମ କାରଣ । ତେଣୁ ସମାଜର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଦୁଷ୍ଟମାନଙ୍କୁ କଠୋର ଦଣ୍ଡଦେବା ମାନବିକତାର ପରିପନ୍ଥୀ ନୁହେଁ ।

କଠୋର ଦଣ୍ଡ ବ୍ୟବସ୍ଥା କେବଳ ଯେ ଇସ୍‌ଲାମରେ ଅଛି ତାହା ନୁହେଁ, ବାଇବଲ୍ ଓ ହିନ୍ଦୁଶାସ୍ତ୍ରଗୁଡ଼ିକରେ ମଧ୍ୟ ବ୍ୟଭିଚାରକୁ ଏକ ସଙ୍ଗୀନ୍ ଅପରାଧ ବୋଲି ବିବେଚନା କରାଯାଇଛି ଏବଂ ଏହାର ନିରାକରଣ ପାଇଁ ଧର୍ମଶାସ୍ତ୍ରଗୁଡ଼ିକରେ ପ୍ରାୟ ସମାନ ଧରଣର ଦଣ୍ଡ ବ୍ୟବସ୍ଥା ରହିଛି । ବେଦ କହେ ଯେ, ବ୍ୟଭିଚାରକୁ ପ୍ରୋତ୍ସାହନ ଦେଉଥିବା ଲୋକମାନଙ୍କୁ କଠୋର ଦଣ୍ଡ ଦିଆଯିବା ଉଚିତ :

> "ହେ ରାଜନ୍ ! ବିଷୟ ସେବାରେ ରତ ହୋଇଥିବା ଯେଉଁ ପୁରୁଷ ବା ସ୍ତ୍ରୀ ବ୍ୟଭିଚାରକୁ ବଢ଼ାନ୍ତି ସେମାନଙ୍କୁ କଠୋର ଦଣ୍ଡ ଦ୍ୱାରା ଶିକ୍ଷା ଦେବା ଉଚିତ୍ ।"

ଯଜୁର୍ବେଦ, ଅଧ୍ୟାୟ-୨୩, ମନ୍ତ୍ର-୨୧

ହିନ୍ଦୁ ଶାସ୍ତ୍ର ମନୁ ସଂହିତାରେ ବ୍ୟଭିଚାର ପାଇଁ ନିମ୍ନ ଦଣ୍ଡବ୍ୟବସ୍ଥା ରହିଛି :

> "ବ୍ୟଭିଚାରୀ ପାପୀ ପୁରୁଷକୁ ତପ୍ତ ଲୌହଶଯ୍ୟାରେ ଶୁଆଇ ଦାହ କରିବ ଏବଂ ପାପକାରୀକୁ ତହିଁରେ ପୋଡ଼ିଯିବା ସକାଶେ ଲୋକମାନେ ତଦୁପରି କାଷ୍ଠ ନିକ୍ଷେପ କରିବେ ।"

ମନୁ ସଂହିତା ୮ : ୩୭୨

ବାଇବଲ୍‌ରେ ମଧ୍ୟ ବ୍ୟଭିଚାରୀକୁ ପ୍ରସ୍ତରାଘାତ କରି ହତ୍ୟା କରିବାର ଆଦେଶ ଅଛି :

''ମାତ୍ର କଥା ଯେବେ ସତ୍ୟ ହୁଏ ଯେ, କନ୍ୟାର କୌମାର୍ଯ୍ୟ ଚିହ୍ନ ଦେଖାନଯାଏ, ତେବେ ସେମାନେ ସେହି କନ୍ୟାକୁ ବାହାର କରି ପିତୃଗୃହର ଦ୍ୱାର ନିକଟକୁ ଆଣିବେ, ଆଉ ନଗରସ୍ଥ ଲୋକମାନେ ପ୍ରସ୍ତରାଘାତ କରି ତାହାକୁ ବଧ କରିବେ, କାରଣ ପିତୃଗୃହରେ ବ୍ୟଭିଚାର କରିବାରୁ ସେ ଇସ୍ରାଏଲ ମଧ୍ୟରେ ମୂଢ଼ତାର କର୍ମ କଲା, ଏହି ରୂପେ ତୁମ୍ଭେ ଆପଣା ମଧ୍ୟରୁ ଦୁଷ୍ଟତା ଦୂର କରିବ । ଯେବେ କୌଣସି ପୁରୁଷ ବିବାହିତା ସ୍ତ୍ରୀ ସହିତ ଶୟନ କାଳରେ ଧରାପଡ଼େ, ତେବେ ସେହି ସ୍ତ୍ରୀ ସହିତ ଶୟନକାରୀ ପୁରୁଷ ଓ ସେହି ସ୍ତ୍ରୀ ଦୁହେଁ ହତ ହେବେ । ଏହି ରୂପେ ତୁମ୍ଭେ ଇସ୍ରାଏଲ ମଧ୍ୟରୁ ଦୁଷ୍ଟତା ଦୂର କରିବ ।''

ବାଇବଲ୍, ଦ୍ୱିତୀୟ ବିବରଣ ୨୨ : ୨୦-୨୨

ଇସ୍‌ଲାମୀୟ ଶାସ୍ତ୍ରରେ ମଧ୍ୟ ଠିକ୍ ସେହିପରି ବ୍ୟଭିଚାରୀକୁ ପ୍ରସ୍ତରାଘାତ କରି ମୃତ୍ୟୁଦଣ୍ଡ ଦେବାର ବ୍ୟବସ୍ଥା ଅଛି :

''ୟହୁଦୀମାନେ ଅଲ୍ଲାହ୍‌ଙ୍କର ମହାମାନ୍ୟ ଧର୍ମଦୂତଙ୍କ ନିକଟକୁ ଆସି କହିଲେ ଯେ, ସେମାନଙ୍କ ମଧ୍ୟରୁ ଜଣେ ପୁରୁଷ ଓ ସ୍ତ୍ରୀ ଅନୈତିକ ଶାରୀରିକ ସମ୍ବନ୍ଧ ସ୍ଥାପନ କରିଛନ୍ତି । ଅଲ୍ଲାହ୍‌ଙ୍କ ଧର୍ମଦୂତ ସେମାନଙ୍କୁ ପ୍ରଶ୍ନ କଲେ–'ତୁମ୍ଭେମାନେ ତୌରାତ୍ (ବାଇବେଲ୍‌ର ପୁରାତନ ନିୟମ)ରେ ରଜ୍‌ମ (ପ୍ରସ୍ତରାଘାତ) ବିଷୟରେ କିଭଳି ଦଣ୍ଡବିଧାନ ଦେଖୁଛ ?' ସେମାନେ ଉତ୍ତର ଦେଲେ–'ଆମ୍ଭେ ସେମାନଙ୍କ ଅପରାଧ ଘୋଷଣା କରୁ ଏବଂ ସେମାନଙ୍କୁ ଚାବୁକାଘାତ କରୁ ।' ଏହା ଶୁଣି ଅବ୍ଦୁଲ୍ଲାହ ବିନ୍ ସଲାମ୍+ କହିଲେ, 'ତୁମେ ମିଥ୍ୟା କହୁଛ । ତୌରାତ୍‌ରେ ପ୍ରସ୍ତରାଘାତର ଆଦେଶ ରହିଛି ।' ସେମାନେ ତୌରାତ୍ ଆଣି ଖୋଲିଲେ ଏବଂ ସେମାନଙ୍କ

---

\+ ଅବ୍ଦୁଲ୍ଲାହ ବିନ୍ ସଲାମ ପୂର୍ବେ ଜଣେ ୟହୁଦୀ ବିଦ୍ୱାନ୍ ଥିଲେ, ଯିଏ ପରେ ଇସ୍‌ଲାମ ଧର୍ମ ଗ୍ରହଣ କରିଥିଲେ ।

ମଧ୍ୟରୁ ଜଣେ ପ୍ରସ୍ତରାଘାତ ସମ୍ବନ୍ଧୀୟ ଉକ୍ତି ଉପରେ ହାତରଖି ତା' ପୂର୍ବ ଓ ପରବର୍ତ୍ତୀ ଉକ୍ତିଗୁଡ଼ିକ ପଢ଼ି ଶୁଣାଇଲେ । ଅବ୍ଦୁଲ୍ଲାହ ବିନ୍ ସଲାମ୍ ତତ୍‌କ୍ଷଣାତ୍ କହିଲେ, 'ହାତ ଉଠାଅ ।' ସେ ହାତ ଉଠାଇବାରୁ ଦେଖାଗଲା ଯେ ସେଠାରେ ପ୍ରସ୍ତରାଘାତ ସମ୍ବନ୍ଧରେ ଉଲ୍ଲେଖ ରହିଛି । (ତେଣୁ) ସେମାନେ କହିଲେ, 'ମୁହମ୍ମଦ ଠିକ୍ କହିଛନ୍ତି, ତୌରାତ୍‌ରେ ରଜ୍‌ମର ଆଦେଶ ରହିଛି ।' ତା'ପରେ ମହାମାନ୍ୟ ଧର୍ମଦୂତ ଉଭୟ (ପୁରୁଷ ଓ ସ୍ତ୍ରୀ)ଙ୍କୁ ପ୍ରସ୍ତରାଘାତ କରି ନିହତ କରିବାର ଆଦେଶ ଦେଲେ । (ଅବ୍ଦୁଲ୍ଲାହ ବିନ୍ ଉମର୍ କହିଲେ, 'ମୁଁ ଦେଖିଲି ଯେ ପୁରୁଷଟି ସ୍ତ୍ରୀଲୋକଟିକୁ ପଥରମାଡ଼ରୁ ରକ୍ଷା କରିବା ପାଇଁ ତା' ଉପରକୁ ଝୁଙ୍କି ପଡ଼ିଥିଲା ।)''

**ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ୮୨୯**

ଇସ୍‌ଲାମ ପରମେଶ୍ୱରଙ୍କ ନିର୍ଦ୍ଧାରିତ ଜୀବନ ବ୍ୟବସ୍ଥା । ଭୂଖଣ୍ଡର ଯେଉଁ ଭାଗରେ ଏହା ପ୍ରଚଳିତ ହେବ, ସେଠାରେ ନିଶ୍ଚିତ ଶାନ୍ତି ବିରାଜିତ ହେବ ଏବଂ ଯେଉଁଠାରେ ଏହାର ବ୍ୟତିକ୍ରମ ହେବ, ସେଠାରେ ଅବଶ୍ୟ ଅସ୍ଥିରତା ସୃଷ୍ଟି ହେବ । ଉଦାହରଣ ସ୍ୱରୂପ, ଇଂଲଣ୍ଡ ଓ ଆମେରିକା ଭଳି ଉନ୍ନତ ରାଷ୍ଟ୍ରମାନଙ୍କ ଅବସ୍ଥା ଏବଂ ସାଉଦି ଆରବର ଅବସ୍ଥା ଉପରେ ଦୃଷ୍ଟିପାତ କରାଯାଇପାରେ । ପାର୍ଥକ୍ୟ ସ୍ପଷ୍ଟ ଜଣା ପଡ଼ିଯିବ ।

୧୯୯୬ ମସିହାର ଏକ ରିପୋର୍ଟ ଅନୁସାରେ ଆମେରିକାରେ ଦୈନିକ ବଳାତ୍କାରର ସଂଖ୍ୟା ୨୭୧୩ । ଅର୍ଥାତ୍, ପ୍ରତି ୩୨ ସେକେଣ୍ଡରେ ଗୋଟିଏ ବଳାତ୍କାର । ଯଦି ଆମେରିକାରେ ଇସ୍‌ଲାମୀୟ ପ୍ରତିକାର ବ୍ୟବସ୍ଥା ପ୍ରଣୟନ କରାଯାଏ, ତେବେ ସେଠାରେ ବଳାତ୍କାରର ହାର କମିବ କିମ୍ବା ବୃଦ୍ଧି ପାଇବ ?

କୌଣସି ଅପରାଧର ପ୍ରକୃଷ୍ଟ ନିରାକରଣ ପାଇଁ ସର୍ବପ୍ରଥମେ ତାର ପ୍ରବେଶ ଦ୍ୱାରଗୁଡ଼ିକୁ ରୁଦ୍ଧ କରାଯାଏ । ତା'ପରେ ସମାଜରେ ଥିବା ଆବର୍ଜନାଗୁଡ଼ିକୁ ସଫା କରାଯାଏ । ମୂଷା ଉପଦ୍ରବରୁ ରକ୍ଷା ପାଇବା ପାଇଁ ପ୍ରଥମେ ମୂଷା ପ୍ରବେଶ କରୁଥିବା ବାଟଗୁଡ଼ିକୁ ବନ୍ଦ କରିବା ଆବଶ୍ୟକ । ତା'ପରେ ଯନ୍ତା ବସାଇ ଅବଶିଷ୍ଟ ମୂଷାଙ୍କୁ ଧରାଯିବା ଉଚିତ । କିନ୍ତୁ ମୂଷାମାନଙ୍କ ପାଇଁ ଅନେକ ପ୍ରବେଶପଥ ଉନ୍ମୁକ୍ତ ରଖି ଘରେ ଯେତେ ମୂଲ୍ୟବାନ୍ ଯନ୍ତା ବା ଉତ୍କଟ ବିଷର

ବ୍ୟବସ୍ଥା କରାଯାଉ, ଘରର ଆସବାବପତ୍ର ମୂଷା ଦାଉରୁ ରକ୍ଷା ପାଇବା ଅସମ୍ଭବ ।

ଯଦି ନିର୍ଲଜ୍ଜତାର ସମସ୍ତ ବାଟ ଉନ୍ମୁକ୍ତ ରଖାଯାଏ, ଯଦି ଆଧୁନିକତା ନାଁରେ ଝିଅ-ବୋହୂଙ୍କୁ ସଂକ୍ଷିପ୍ତରୁ ସଂକ୍ଷିପ୍ତତମ ବସ୍ତ୍ର ପିନ୍ଧିବାକୁ ଦିଆଯାଏ, ଯଦି ସହଶିକ୍ଷା ଆଳରେ ପ୍ରାପ୍ତବୟସ୍କ ପୁଅ-ଝିଅଙ୍କୁ ମିଳିମିଶି ପଢ଼ିବା ବୁଲିବାର ସୁଯୋଗ ଦିଆଯାଏ, ଯାହାଦ୍ୱାରା ସେମାନେ ପୁସ୍ତକ ଅପେକ୍ଷା ପରସ୍ପରକୁ ଅଧିକ ଅଧ୍ୟୟନ କରନ୍ତୁ, ଯଦି ସହରର ପ୍ରତି କାନ୍ଥ-ବାଡ଼ରେ ଚଳଚ୍ଚିତ୍ର ତାରକାମାନଙ୍କର ନଗ୍ନ-ଅର୍ଦ୍ଧନଗ୍ନ ଚିତ୍ର ଲଗାଇ ଦିଆଯାଏ, ଯଦି ବିଜ୍ଞାପନରେ ମହିଳାମାନଙ୍କର ଅଶ୍ଳୀଳ ଚିତ୍ର ବ୍ୟବହାର କରାଯାଏ, ଯଦି ସେନ୍‌ସର ବୋର୍ଡ ଅଶ୍ଳୀଳ ଚଳଚ୍ଚିତ୍ରଗୁଡ଼ିକୁ ଘରେ ଘରେ ଦେଖିବା ପାଇଁ ସ୍ୱୀକୃତି ପ୍ରଦାନ କରିଦିଏ ଏବଂ ବାପା-ଝିଅ, ମା'-ପୁଅ, ଭାଇ-ଭଉଣୀମାନେ ଏକାଠି ବସି ନିର୍ଲଜ୍ଜ ଦୃଶ୍ୟ ଉପଭୋଗ କରନ୍ତି, ତେବେ ପୃଥିବୀର କୌଣସି ଶକ୍ତି ଆମ ସମାଜରେ ବ୍ୟଭିଚାରକୁ ରୋକିପାରିବ ନାହିଁ । ଆଧୁନିକତା ଓ ନାରୀ ସ୍ୱାଧିନତା ନାମରେ ପାଶ୍ଚାତ୍ୟ ସଂସ୍କୃତି ଯେ ଆମ ସନ୍ତାନମାନଙ୍କ ଆତ୍ମାକୁ କଳୁଷିତ କରିଚାଲିଛି, ଏହା ହୃଦୟଙ୍ଗମ କରିବାର ସମୟ ଆମ ପାଇଁ କେବେ ଆସିବ ?





# ଉପସଂହାର

ପୂର୍ବ ଅଧ୍ୟାୟଗୁଡ଼ିକରେ ଯାହା ଆଲୋଚନା କରାଗଲା, ମୋଟାମୋଟି ଭାବରେ ତାହାହିଁ ଇସ୍‌ଲାମର ମୌଳିକ ଜୀବନଶୈଳୀ, ଯାହାର ଶିକ୍ଷା ପବିତ୍ର କୁର୍‌ଆନ ଦେଇଛି ଏବଂ ମହାମାନ୍ୟ ମୁହମ୍ମଦ ଦେଇଛନ୍ତି । ମାନବ ସମାଜର ଜୀବନଯାପନ କରିବା ପାଇଁ ଏହା ଏକ ଆଦର୍ଶ ପଦ୍ଧତି, ଯାହାକୁ କୌଣସି ବିଚାରବନ୍ତ ଓ ବିବେକବାନ ବ୍ୟକ୍ତି ସ୍ୱୀକାର କରିବାରେ ଦ୍ୱିଧାବୋଧ କରିବ ନାହିଁ । କୌଣସି ମଟରସାଇକେଲ ବିଷୟରେ ଜାଣିବା ପାଇଁ ତା'ର ବୈଶିଷ୍ଟ୍ୟଗୁଡ଼ିକୁ ଦେଖାଯାଏ ବା ତା'ର ମୁଖ୍ୟ ଯନ୍ତ୍ରାଂଶଗୁଡ଼ିକ ପରୀକ୍ଷା କରାଯାଏ, ଯଥା–ଏହା ମଜବୁତ୍ କି ନୁହେଁ, ଏହାର ଇଞ୍ଜିନ୍ କିପରି, ମାଇଲେଜ କେତେ ଏବଂ ଏହାର ପୁନଃବିକ୍ରି ମୂଲ୍ୟ ଅଛି ନା ନାହିଁ ଇତ୍ୟାଦି । ସେହିପରି କୌଣସି ଧର୍ମକୁ ଜାଣିବା ପାଇଁ ତା'ର ସିଦ୍ଧାନ୍ତ ଓ ମୌଳିକ ନୀତି-ନିୟମଗୁଡ଼ିକୁ ହିଁ ପରୀକ୍ଷା କରାଯାଏ । ଯଦି ଏଗୁଡ଼ିକ ସତ୍ୟ ଓ ନ୍ୟାୟ ଉପରେ ପର୍ଯ୍ୟବେଶିତ ଥିବାର ପ୍ରମାଣିତ ହୁଏ, ତେବେ ତା'ର ଅଧିନିୟମ ଓ କର୍ମକାଣ୍ଡ ସମ୍ବନ୍ଧୀୟ ନିୟମଗୁଡ଼ିକ ମଧ୍ୟ ନିଶ୍ଚୟ ସତ୍ୟ ଉପରେ ଆଧାରିତ ଥିବ । ଯାହାର ପ୍ରମୁଖ ନିୟମଗୁଡ଼ିକ ସମାଜ ପାଇଁ କଲ୍ୟାଣକାରୀ, ତା'ର ଉପନିୟମଗୁଡ଼ିକ ମଧ୍ୟ କ୍ଷତିକାରକ ହେବ ନାହିଁ ।

ବର୍ତ୍ତମାନ ଆସନ୍ତୁ ଦେଖିବା ଯେ ଇସ୍‌ଲାମରେ କି କି ବୈଶିଷ୍ଟ୍ୟ ରହିଛି–

(୧) ପ୍ରଥମତଃ ଏହା ଚିରନ୍ତନ ସତ୍ୟ ଉପରେ ଆଧାରିତ । ବିଶୁଦ୍ଧ ଏକେଶ୍ୱରବାଦ ଏହାର ପ୍ରଥମ ସିଦ୍ଧାନ୍ତ । ଯିଏ ବ୍ୟକ୍ତିର ସ୍ରଷ୍ଟା, ଯାହାର କୃପା ଯୋଗୁଁ ସେ ଜୀବିତ ଏବଂ ଯିଏ ତାର ପ୍ରକୃତ ହର୍ତ୍ତାକର୍ତ୍ତା ଓ ଭାଗ୍ୟବିଧାତା, କେବଳ ସେ ହିଁ ତାର ସମସ୍ତ ସେବା-ଉପାସନାର ଅଧିକାରୀ ।

(୨) ଇସ୍‌ଲାମର ଜୀବନଶୈଳୀ ମାନବ ପ୍ରକୃତିର ଅନୁରୂପ । ତେଣୁ ଏଥିରେ କୌଣସି କୃତ୍ରିମତା ନାହିଁ ।

(୩) ଏଥିରେ ଜାତିଗତ ବା ବର୍ଣ୍ଣଗତ ବୈଷମ୍ୟ ନାହିଁ । ମନୁଷ୍ୟ ଜାତି ସମସ୍ତେ ସମାନ । ସମସ୍ତେ ଗୋଟିଏ ପରିବାର ଏବଂ ସେମାନଙ୍କ ମଧ୍ୟରେ ଭ୍ରାତୃତ୍ୱର ସମ୍ପର୍କ ରହିଛି ।

(୪) ଇସ୍‌ଲାମରେ ବ୍ୟକ୍ତିକୁ ତା'ର ସମସ୍ତ ନ୍ୟାଯ୍ୟ ଅଧିକାର ପ୍ରଦାନ କରାଯାଇଛି ଏବଂ ତା'ର ମୌଳିକ ଅଧିକାରଗୁଡ଼ିକର ସୁରକ୍ଷା ପାଇଁ ଧର୍ମବିଧାନରେ ବିହିତ ବ୍ୟବସ୍ଥା ମଧ୍ୟ କରାଯାଇଛି ।

(୫) ଇସ୍‌ଲାମ ଏକ ମାନବବାଦୀ ଧର୍ମ ହୋଇଥିବାରୁ ଏଥିରେ ବ୍ୟକ୍ତି ଏବଂ ସମାଜର ଧନ-ଜୀବନ ଓ ମାନ-ସମ୍ମାନ ପ୍ରତି କ୍ଷତିକାରକ ସମସ୍ତ ଆଚରଣଗୁଡ଼ିକ ନିଷିଦ୍ଧ କରାଯାଇଛି ।

(୬) ଏଥିରେ ମାନବୀୟ ମୂଲ୍ୟବୋଧ ସମ୍ବନ୍ଧୀୟ ସମସ୍ତ ନୀତିଶିକ୍ଷାଗୁଡ଼ିକ ରହିଛି ଏବଂ ବ୍ୟକ୍ତିର ଆଧ୍ୟାତ୍ମିକ ଓ ଚାରିତ୍ରିକ ବିକାଶ ପାଇଁ ଉପଯୁକ୍ତ ବ୍ୟବସ୍ଥା ମଧ୍ୟ ରହିଛି ।

(୭) ଧର୍ମବିଧାନରେ ସମାଜର ବିଭିନ୍ନ ସମସ୍ୟାଗୁଡ଼ିକର ଉଚିତ୍ ପ୍ରତିକାର ରହିଛି ।

ଏ ସମସ୍ତ ବୈଶିଷ୍ଟ୍ୟ ସତ୍ତ୍ୱେ ଇସ୍‌ଲାମ ନିଜକୁ କାହା ଉପରେ ଲଦିଦେବାକୁ ପସନ୍ଦ କରିନାହିଁ, ବରଂ ଧର୍ମର ସ୍ୱାଧିନତା ପ୍ରଦାନ କରିଛି । ପାଠକମାନେ ବିଚାର କରିବେ ପ୍ରକୃତରେ କ'ଣ ଏହି ଧର୍ମରେ କୌଣସି ଅସତ୍ୟ, ଅନ୍ୟାୟ ବା ଅମାନବିକତା ଅଛି ? ଇସ୍‌ଲାମର ଜୀବନମାର୍ଗ ମନୁଷ୍ୟର ଆଧ୍ୟାତ୍ମିକ, ପାରିବାରିକ, ସାମାଜିକ, ଅର୍ଥନୈତିକ ତଥା ନାଗରିକ ଜୀବନରେ ଶାନ୍ତି ସ୍ଥାପନ କରିବ କିମ୍ବା ଅଶାନ୍ତିର ଝଡ଼ ସୃଷ୍ଟି କରିବ ? ଏହାକୁ ଅନୁସରଣ କରୁଥିବା ସମାଜରେ ଦାରିଦ୍ର୍ୟ, ଦୁର୍ନୀତି, ହତ୍ୟା, ବ୍ୟଭିଚାର ଆଦି ଅପରାଧର ସଂଖ୍ୟା ହ୍ରାସ ପାଇବ କିମ୍ବା ବଢ଼ିବ ?

ଏହି ଆଦର୍ଶ ଜୀବନମାର୍ଗର ଶିକ୍ଷା ଦେଇ ଯାଇଛନ୍ତି ଈଶ୍ୱରଙ୍କର ଶେଷ ବାର୍ତ୍ତାବହ ମହାମାନ୍ୟ ମୁହମ୍ମଦ । ଅଲ୍ଲାହଙ୍କର ତାଙ୍କ ପ୍ରତି ଅଶେଷ କରୁଣା ହେଉ ।

ଆରବର ଗୋଟିଏ ଅସଭ୍ୟ ଓ କୁସଂସ୍କାରୀ ସମାଜରେ ଜନ୍ମଗ୍ରହଣ କରିଥିବା ଜଣେ ନିରକ୍ଷର ବ୍ୟକ୍ତି ମାତ୍ର ୨୩ବର୍ଷ ମଧ୍ୟରେ ଆରବର ଇତିହାସ ବଦଳାଇଦେଲେ । ୧୨ଲକ୍ଷ ବର୍ଗ ମାଇଲ ଅଞ୍ଚଳରେ ବ୍ୟାପି ରହିଥିବା ଅଧିବାସୀମାନଙ୍କର ଆଚାର, ବ୍ୟବହାର, ଚରିତ୍ର ଓ ବିଶ୍ୱାସ ମଧ୍ୟ ବଦଳାଇଦେଲେ । ଭିନ୍ନ ଭିନ୍ନ ମତବାଦ ଓ ଭିନ୍ନ ଭିନ୍ନ ପରମ୍ପରା ଅନୁସରଣ କରୁଥିବା ବିଶୃଙ୍ଖଳିତ ସମ୍ପ୍ରଦାୟଗୁଡ଼ିକୁ ଶୃଙ୍ଖଳିତ କରି ଗୋଟିଏ ଧର୍ମ ଓ ଗୋଟିଏ ଭ୍ରାତୃତ୍ୱର ବନ୍ଧନରେ ବାନ୍ଧିଦେଲେ । ଯେଉଁ ସମାଜରେ ହତ୍ୟା, ଲୁଣ୍ଠନ, ବ୍ୟଭିଚାର, ଅଶ୍ଳୀଳତା, ମଦ, ଜୁଆ ଇତ୍ୟାଦି ସାଧାରଣ ଘଟଣା ଥିଲା, ଯେଉଁଠି ଦାସତ୍ୱ ପ୍ରଥାର ପ୍ରଚଳନ ଥିଲା, ମହିଳାମାନଙ୍କ ପ୍ରତି ଅକଥନୀୟ ଅତ୍ୟାଚାର କରାଯାଉଥିଲା ଏବଂ ଯେଉଁ ସମାଜରେ ବର୍ବରତା ଏତେ ଚରମ ସୀମାରେ ପହଞ୍ଚିଥିଲା ଯେ, ବାପା ନିଜ କୁନି ଝିଅକୁ ଜିଅନ୍ତା ପୋତି ଦେଉଥିଲା, ସେହି ସମାଜ ମାତ୍ର ୨୩ବର୍ଷରେ ବିଶ୍ୱର କୋଟି କୋଟି ଜନତାଙ୍କ ପାଇଁ ଏକ ଆଦର୍ଶ ହୋଇଗଲା ଏବଂ ସେମାନଙ୍କୁ ସତ୍ୟ, ନ୍ୟାୟ, ପ୍ରେମ ଓ ପରୋପକାରର ଶିକ୍ଷା ପ୍ରଦାନ କଲା । ଯେଉଁମାନେ ମହାମାନ୍ୟ ମୁହମ୍ମଦଙ୍କୁ ହତ୍ୟା କରିବାର ଯୋଜନା କରିଥିଲେ, ତାଙ୍କର ସେହି ଶତ୍ରୁମାନେ ମଧ୍ୟ ତାଙ୍କ ମାର୍ଗ ସ୍ୱୀକାର କରିନେଲେ ଏବଂ ତାଙ୍କ ପାଇଁ ନିଜ ପ୍ରାଣ ମଧ୍ୟ ଉତ୍ସର୍ଗ କରିଦେଲେ । ଏସବୁ ତରବାରୀ ମୁନରେ ନୁହେଁ, ବରଂ ସତ୍ୟ ଓ ପ୍ରେମ ଦ୍ୱାରା ସମ୍ଭବ ହେଲା । ଏତେ କମ୍ ସମୟ ମଧ୍ୟରେ କୌଣସି ସୈନ୍ୟବଳ ବା ଅସ୍ତ୍ରଶସ୍ତ୍ର ବିନା ଏପରି ଚମତ୍କାର କୌଣସି ଶକ୍ତିଶାଳୀ ରାଷ୍ଟ୍ର ପକ୍ଷରେ ମଧ୍ୟ ସମ୍ଭବପର ନୁହେଁ ।



ମହାମାନ୍ୟ ଧର୍ମଦୂତ ଜଣେ ସତ୍ୟବାଦୀ, ନ୍ୟାୟବନ୍ତ ଓ ମଧୁରାଳାପୀ ବ୍ୟକ୍ତି ଥିଲେ । ସାରା ଜୀବନରେ ଥରେ ମଧ୍ୟ ମିଛ କହି ନାହାନ୍ତି । ଇତିହାସ କହେ ଯେ, ସେ ଅତି ସଚ୍ଚୋଟ ଓ ବିଶ୍ୱାସୀ ଥିଲେ, ଯେଉଁଥିପାଇଁ ସମାଜ ତାଙ୍କୁ ଅଲ-ଅମୀନ (ବିଶ୍ୱାସଯୋଗ୍ୟ) ଉପାଧି ଦେଇଥିଲା । ଅତି ସରଳ ଓ ନିରାଡ଼ମ୍ବର ଜୀବନ । କେବେ ଖାଆନ୍ତି, କେବେ ଉପାସ ମଧ୍ୟ ରହନ୍ତି ଏବଂ ଚମଡ଼ା ଶେଯ ବା ଖଜୁରୀ ପତ୍ର ବିଛଣାରେ ଶୁଅନ୍ତି ।

ବିଶ୍ୱ ଇତିହାସରେ ମହାମାନ୍ୟ ମୁହମ୍ମଦଙ୍କ ବ୍ୟତୀତ ଏପରି କେହି ବ୍ୟକ୍ତି ନାହିଁ, ଯିଏ ଜୀବନର ସମସ୍ତ କ୍ଷେତ୍ରରେ ନିଜର ମହାନତା ପ୍ରମାଣିତ କରିପାରିଛି ।

ଅନେକ ଅଣମୁସଲମାନ ଐତିହାସିକ ଓ ଶିକ୍ଷାବିତ୍ ତାଙ୍କୁ ବିଶ୍ୱର ମହାନତମ ତଥା ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତି ରୂପେ ସ୍ୱୀକାର କରଛନ୍ତି । ଡକ୍ଟର ମାଇକେଲ ଏଚ୍. ହାର୍ଟ ନିଜର ଦୀର୍ଘଦିନର ଗବେଷଣା ପରେ ବିଶ୍ୱ ଇତିହାସରୁ ବାଛି ବାଛି ଶତାଧିକ ଅତ୍ୟନ୍ତ ପ୍ରଭାବଶାଳୀ ବ୍ୟକ୍ତିଙ୍କ ଉପରେ ନିଜର ପ୍ରସିଦ୍ଧ ପୁସ୍ତକ "The 100 : A Ranking of the Most Influential Persons in History" ଲେଖିଛନ୍ତି । ସେ ପୃଥିବୀର ଶହେଜଣ ମହାନ୍ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ ସୂଚୀରେ ମହାମାନ୍ୟ ମୁହମ୍ମଦଙ୍କୁ ସର୍ବୋଚ୍ଚ ସ୍ଥାନରେ ରଖିଛନ୍ତି ଏବଂ ଏହାର କାରଣ ଦର୍ଶାଇ ଲେଖିଛନ୍ତି :

"My choice of Muhammad to lead the list of the world's most influential persons may surprise some readers and may be questioned by others, but he was the only man in history who was supremely successful on both the religious and secular level."

‘‘ମୁହମ୍ମଦଙ୍କୁ ବିଶ୍ୱର ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କର ସୂଚୀର ଅଗ୍ରଭାଗରେ ରଖିବାର ମୋ ପସନ୍ଦ କେତେକ ପାଠକଙ୍କୁ ଆଶ୍ଚର୍ଯ୍ୟଚକିତ କରିପାରେ ଏବଂ ଅନେକଙ୍କ ମନରେ ପ୍ରଶ୍ନବାଚୀ ମଧ୍ୟ ସୃଷ୍ଟି କରିପାରେ । କିନ୍ତୁ ଇତିହାସରେ କେବଳ ସେଇ ହିଁ ଜଣେ ବ୍ୟକ୍ତି ଯିଏ ଧର୍ମ ଏବଂ ଧର୍ମ-ନିରପେକ୍ଷତା ସ୍ତରରେ ସର୍ବାଧିକ ସଫଳତା ଲାଭ କରିଛନ୍ତି ।’’+

ସେହିପରି ପ୍ରଫେସର କେ.ଏସ୍. ରାମକ୍ରିଷ୍ଣା ରାଓ ତାଙ୍କ ପୁସ୍ତକ ‘ଦି ପ୍ରଫେଟ୍ ଅଫ୍ ଇସ୍‌ଲାମ’ରେ ଲେଖିଛନ୍ତି :

"The personality of Muhammed, it is most difficult to get into the whole truth of it.

---

+ The 100 : A Ranking of the Most Influential Persons in History, P-33, Published in India by Meera Publication, Chennai-600 040

Only a glimpse of it I can catch. What a dramatic succession of picturesque scenes ? There is Muhammed, the Prophet. There is Muhammed, the Warrior; Muhammed, the Businessman; Muhammed, the Statesman; Muhammed, the Orator; Muhammed, the Reformer; Muhammed the Refuge of Orphans; Muhammed, the Protector of Slaves; Muhammed, the Emancipator of women; Muhammed, the Judge; Muhammed, the Saint. All in all these magnificent roles, in all these departments of human activities, he is like **a hero**."

"ମୁହମ୍ମଦଙ୍କ ବ୍ୟକ୍ତିତ୍ୱର ସମ୍ପୂର୍ଣ୍ଣ ସତ୍ୟତାକୁ ଜାଣିପାରିବା ଅତ୍ୟନ୍ତ କଷ୍ଟକର । ମୁଁ କେବଳ ତାର ଗୋଟିଏ ଝଲକ ପାଇପାରୁଛି । ସିନେମାର ଦୃଶ୍ୟପଟ୍ଟ ଭଳି କି ନାଟକୀୟ ଅନୁକ୍ରମ ! ମୁହମ୍ମଦ ହେଉଛନ୍ତି ଧର୍ମପ୍ରବର୍ତ୍ତକ, ମୁହମ୍ମଦ ହେଉଛନ୍ତି ବୀରପୁରୁଷ, ମୁହମ୍ମଦ ବ୍ୟବସାୟୀ, ମୁହମ୍ମଦ ରାଜନୀତିଜ୍ଞ, ମୁହମ୍ମଦ ହିଁ ବକ୍ତା, ମୁହମ୍ମଦ କ୍ରୀତଦାସଙ୍କର ସଂରକ୍ଷକ, ମୁହମ୍ମଦ ନାରୀଜାତିର ମୁକ୍ତିଦାତା, ମୁହମ୍ମଦ ହିଁ ନ୍ୟାୟାଧୀଶ, ମୁହମ୍ମଦ ହିଁ ସନ୍ଥ । ଏ ସମସ୍ତ ଚମତ୍କାର ଭୂମିକାରେ, ସମସ୍ତ ମାନବୀୟ କାର୍ଯ୍ୟକ୍ଷେତ୍ରରେ ସେ ଜଣେ 'ନାୟକ' ସଦୃଶ ।"+

ଏହି ପୁରୁଷୋତ୍ତମ ଈଶ୍ୱରଙ୍କର ସେହି ମହାମାନ୍ୟ ଧର୍ମଦୂତ ଯାହାଙ୍କର ଆଗମନୀ ବିଷୟରେ ବିଭିନ୍ନ ଧର୍ମଶାସ୍ତ୍ର, ଯଥା—ବେଦ, ଉପନିଷଦ, ବାଇବେଲ ଏବଂ ପୁରାଣର ଅନେକ ସ୍ଥାନରେ ଭବିଷ୍ୟବାଣୀମାନ ରହିଛି । ମହର୍ଷି ବ୍ୟାସ ଭବିଷ୍ୟ ପୁରାଣରେ ସ୍ପଷ୍ଟ ଲେଖିଛନ୍ତି ଯେ, ଆଗନ୍ତୁକ ଧର୍ମପ୍ରବର୍ତ୍ତକଙ୍କ ନାମ

+ Muhammed—The Prophet of Islam, Prof. K. S. Ramakrishna Rao, Madras, 1952, P-16.

'ମୁହମ୍ମଦ' ହେବ ଏବଂ ସେ ମରୁସ୍ଥଳର ଅଧିବାସୀ ହେବେ ।[++] ବାଇବେଲରେ ମହାମାନ୍ୟ ମୁହମ୍ମଦଙ୍କ ବିଷୟରେ ଭବିଷ୍ୟବାଣୀ କରି ଧର୍ମଦୂତ ମହାମାନ୍ୟ ଯୀଶୁ କହିଛନ୍ତି–''ଜଗତର ଅଧିପତି ଆସୁଅଛି ଆଉ ମୋ'ଠାରେ ତାହାର କିଛି ହିଁ ନାହିଁ ।''[+୧] ଭାଗବତ ପୁରାଣ ମହାମାନ୍ୟ ମୁହମ୍ମଦଙ୍କୁ 'କଲ୍‌କୀ ଅବତାର' ବୋଲି ଉଲ୍ଲେଖ କରି କହିଛି ଯେ, ସେ ଅଶ୍ୱାରୋହଣ କରିବେ, ଦୁଷ୍ଟ ଦମନ କରିବେ, ଜଗତର ରକ୍ଷକ ହେବେ[+୨], ଏବଂ ସେ ଅନ୍ତିମ ଅବତାର ହେବେ[+୩] । କଲ୍‌କୀ ପୁରାଣରେ ତାଙ୍କ ପିତାଙ୍କ ନାମ 'ବିଷ୍ଣୁଯଶ' (ଆରବୀ ଅନୁବାଦ ଅବ୍ଦୁଲ୍ଲାହ୍) ଏବଂ ମାତାଙ୍କ ନାମ 'ସୁମତି' (ଆରବୀ ଅନୁବାଦ ଆମିନା) ହେବ[+୪] ବୋଲି ଉଲ୍ଲେଖ ରହିଛି ଏବଂ ଏହା ମଧ୍ୟ ଭବିଷ୍ୟବାଣୀ ରହିଛି ଯେ, ସେ ମାଧବ ମାସ ଶୁକ୍ଳପକ୍ଷ ଦ୍ୱାଦଶୀ ଦିନ ଜନ୍ମଗ୍ରହଣ କରିବେ[+୫] । ବେଦ ମଧ୍ୟ ମହାମାନ୍ୟ ମୁହମ୍ମଦଙ୍କୁ 'ନରାଶଂସ' (ଆରବୀ ଅନୁବାଦ ମୁହମ୍ମଦ) କହିଛି ଏବଂ ସେ ଓଟ ଆରୋହଣ କରୁଥିବା ଜଣେ ଋଷି ବୋଲି ଭବିଷ୍ୟବାଣୀ କରିଛି[+୬] । ଅଲ୍ଲୋପନିଷଦରେ ଉଲ୍ଲେଖ ଅଛି–''ମୁହମ୍ମଦ ଅଲ୍ଲାହ୍‌ଙ୍କର ବାର୍ତ୍ତାବହ ଏବଂ ଅଲ୍ଲାହ୍‌ଙ୍କର ଶ୍ରେଷ୍ଠତମ ଧର୍ମଦୂତ[+୭] ।'' ପବିତ୍ର କୁର୍‌ଆନ ମହାମାନ୍ୟ ମୁହମ୍ମଦଙ୍କୁ ଅନ୍ତିମ ବାର୍ତ୍ତାବହ ଘୋଷଣା କରିଛି[+୮] ଏବଂ ମହାମାନ୍ୟ ମୁହମ୍ମଦ ମଧ୍ୟ ଈଶ୍ୱରଙ୍କ ଅନ୍ତିମ ଧର୍ମଦୂତ ବୋଲି ନିଜର ପରିଚୟ ଦେଇ କହିଛନ୍ତି :

''ମୁଁ ଅନ୍ତିମ ଧର୍ମଦୂତ ।''

**ସହୀ ବୁଖାରୀ, ୪ର୍ଥ ଖଣ୍ଡ, ହଦିସ୍ ୭୩୫**[+୯]



---

[++] ଭବିଷ୍ୟ ପୁରାଣ, ପ୍ରତିସର୍ଗ, ୩ୟ ଖଣ୍ଡ, ୩ୟ ପର୍ବ, ୩ୟ ଅଧ୍ୟାୟ, ମନ୍ତ୍ର-୫ ଓ ୬

[+୧] ପବିତ୍ର ବାଇବେଲ, ଯୋହନ ୧୪ : ୩୦

[+୨] ଭାଗବତ ପୁରାଣ ୧୨ : ୨ : ୧୯

[+୩] ଭାଗବତ ପୁରାଣ ୧ : ୩ : ୨୪

[+୪] କଲ୍‌କୀ ପୁରାଣ ୨ : ୪

[+୫] କଲ୍‌କୀ ପୁରାଣ ୨ : ୨୫/୨ : ୧୫

[+୬] ଅଥର୍ବ ବେଦ ୨୦ : ୧୨୭ : ୧-୨

[+୭] ଅଲ୍ଲୋପନିଷଦ

[+୮] କୁର୍‌ଆନ ୩୩ : ୪୦

[+୯] ସହୀ ମୁସଲିମ୍ ୧ : ୧୦୬୨ ଏବଂ ତିରମିଜୀ, ୪ର୍ଥ ଖଣ୍ଡ, ହଦିସ୍ ୨୨୧୯

ବିଶ୍ୱର ମହାନ୍ ବୈଜ୍ଞାନିକମାନଙ୍କୁ ମହାମାନ୍ୟ ମୁହମ୍ମଦଙ୍କ ଶିକ୍ଷା ଆଶ୍ଚର୍ଯ୍ୟଚକିତ କରିଦେଇଛି । କୁର୍‌ଆନରେ ଥିବା ପ୍ରାଣୀ ଓ ଉଦ୍ଭିଦବିଜ୍ଞାନ, ଭୂତତ୍ତ୍ୱ ବିଜ୍ଞାନ, ସମୁଦ୍ର ବିଜ୍ଞାନ ଏବଂ ମହାକାଶ ବିଜ୍ଞାନ ସମ୍ବନ୍ଧୀୟ ବିଭିନ୍ନ ତଥ୍ୟଗୁଡ଼ିକ ଉପରେ ଗବେଷଣା କରି ସେମାନେ ଆଶ୍ଚର୍ଯ୍ୟ ପ୍ରକଟ କରିଛନ୍ତି ଯେ, ଯେଉଁ ବୈଜ୍ଞାନିକ ତଥ୍ୟଗୁଡ଼ିକୁ ଅତ୍ୟାଧୁନିକ ଯନ୍ତ୍ରପାତି ଓ ଆଧୁନିକ କଳକୌଶଳ ପ୍ରୟୋଗ କରି ବୈଜ୍ଞାନିକମାନେ ସଦ୍ୟ ଜାଣିପାରିଛନ୍ତି, ସେଗୁଡ଼ିକୁ ଚଉଦଶହ ବର୍ଷ ପୂର୍ବେ ଆରବରେ ଜନ୍ମଗ୍ରହଣ କରିଥିବା ଜଣେ ସମ୍ପୂର୍ଣ୍ଣ ନିରକ୍ଷର ବ୍ୟକ୍ତି ଏତେ ନିର୍ଭୁଲ୍ ଭାବରେ କିପରି ପ୍ରକାଶ କରିପାରିଲେ ? ଏହା କେବଳ ଦିବ୍ୟ ମାର୍ଗଦର୍ଶନ ଦ୍ୱାରା ହିଁ ସମ୍ଭବପର । ତେଣୁ, ମହାମାନ୍ୟ ମୁହମ୍ମଦ ଅବଶ୍ୟ ଈଶ୍ୱରଙ୍କର ବାର୍ତ୍ତାବହ ଏବଂ ତାଙ୍କ ପ୍ରତି ଅବଶ୍ୟ ଦିବ୍ୟବାଣୀ ହେଉଥିଲା ।+

ଏମାନଙ୍କ ମଧ୍ୟରୁ ଟରଣ୍ଟୋ ବିଶ୍ୱବିଦ୍ୟାଳୟର ଜୀବତତ୍ତ୍ୱବିତ୍ ପ୍ରଫେସର କିଥ୍ ମୁର୍ କହନ୍ତି :

> "It has been a great pleasure for me to help clarify statements in the Quran about human development. It is clear to me that these statements must have come to Muhammad from God, or Allah, because almost all of this knowledge was not discovered until many centuries later. This proves to me that Muhammad must have been a messenger of God or Allah."

**Prof. L. Keith Moore**

Proffessor Emeritus, Department of Anatomy & Cell Biology, University of Toronto

ଜର୍ମାନୀର ମେଞ୍ଜ୍ ବିଶ୍ୱବିଦ୍ୟାଳୟର ଭୂତତ୍ତ୍ୱବିଜ୍ଞାନୀ ପ୍ରଫେସର ଆଲ୍‌ଫ୍ରେଡ୍ କ୍ରୋନର୍ କହନ୍ତି :

> "Thinking where Muhammad came from... I think it is almost impossible that he could have

---

+ ବୈଜ୍ଞାନିକମାନଙ୍କ ବକ୍ତବ୍ୟର ଭିଡ଼ିଓ କ୍ଲିପ୍ ୱେବ୍‌ସାଇଟ୍ www.islam-guide.comରେ ଉପଲବ୍ଧ ।

known about things like the common origin of the universe, because scientists have only found out within the last few years with very complicated and advanced technological methods that this is the case."

"Somebody who did not know something about nuclear physics 1400 years ago could not, I think, be in a position to find out from his own mind for instance that the earth and the heavens had the same origin, or many others of the questions that we have discussed here."

**Prof. Alfred Kroner**

Department of Geosciences, University of Mainz, Germany

ଥାଇଲାଣ୍ଡର ସିୟାଙ୍ଗମାୟ ବିଶ୍ୱବିଦ୍ୟାଳୟର ଆନାଟୋମୀ ବିଭାଗର ଚେୟାରମ୍ୟାନ୍ ପ୍ରଫେସର ତେଜତାତ୍ ତେଜାସେନ ରିୟାଦ୍‌ଠାରେ ଅଷ୍ଟମ ମେଡ଼ିକାଲ କନ୍‌ଭେନ୍‌ସନ୍‌ରେ ଉଦ୍‌ବୋଧନ ଦେଇ କହିଲେ :

"In the last three years, I became interested in the Quran... From my studies and what I have learned throughout this conference, I believe that everything that has been recorded in the Quran fourteen hundred years ago must be the truth, that can be proved by the scientific means.

Since the Prophet Muhammad could neither read nor write, Muhammad must be a messenger who relayed this truth which was revealed to him as an enlightenment by the one who is eligible Creator. This Creator must be God, or Allah. Therefore, I think this is the time to say *La ilaha illa Allah*, there is no god to worship except Allah (God), Muhammad Rasool Allah, Muhammad is Messenger of Allah...

The most precious thing of all that I have gained by coming to this place (Conference) is **La ilaha illa Allah, Muhammed-ur-Rasul-Allah** and to have become **Muslim**."

**Prof. Tejatat Tejasen**

Chairman, Department of Anatomy and the former Dean of the faculty of Medicine, University of Chiang Mai, Thailand

ଜାପାନର ବିଖ୍ୟାତ ମହାକାଶ ବିଜ୍ଞାନୀ ଡଃ ୟୋଶିଦ୍ କୋଜାଇ କହନ୍ତି :

"I say, I am very much impressed by finding true astronomical facts in Quran, and for us the modern astronomers have been studying very small piece of the universe. We concentrated our efforts for understanding of very small part. Because by using telescopes, we can see only very few parts of the sky without thinking about the whole universe. So by reading Quran and by answering to the questions, I think I can find my future way for investigation of the universe."

**Dr. Yoshihide Kozai**

Director, National Astronomical Observatory, Tokyo, Japan.

ପ୍ୟାରିସ୍ ବିଶ୍ୱବିଦ୍ୟାଳୟର ଫ୍ରେଞ୍ଚ୍ ଏକାଡେମୀ ଅଫ୍ ସାଇନ୍ସର ବୈଜ୍ଞାନିକ ଡଃ ମରିସ୍ ବୁକାଏ ତାଙ୍କର ଗବେଷଣାଧର୍ମୀ ପୁସ୍ତକ 'The Bible, The Quran and Science'ରେ ଲେଖିଛନ୍ତି :

"The above observation makes the hypothesis advanced by those who see Muhammad as the author of the Quran quite untenable. How could a man, from being illiterate, become the most important author, in terms of literary merit, in the whole of Arabic literature ? How could he then pronounce truths of a scientific nature that no other human being could possibly have developed at the time, and all this

without once making the slightest error in his pronouncements on the subject ?"+

**Dr. Maurice Bucaille**

French Academy of Science, University of Paris

ମହାମାନ୍ୟ ମୁହମ୍ମଦଙ୍କ ଦ୍ୱାରା ପ୍ରେରିତ ଦିବ୍ୟଗ୍ରନ୍ଥ କୁର୍‌ଆନ ମାନବଜାତିକୁ ସ୍ରଷ୍ଟାଙ୍କର ଅନ୍ତିମ ଉଦ୍‌ବୋଧନ । ପୂର୍ବର ସମସ୍ତ ଦିବ୍ୟଗ୍ରନ୍ଥଗୁଡ଼ିକର ମୌଳିକ ଶିକ୍ଷାଗୁଡ଼ିକୁ ବହନ କରିଥିବା ଏହି ଅନୁପମ ଗ୍ରନ୍ଥରେ ସାର୍ବଜନନୀ ସତ୍ୟ ବିରୋଧି କୌଣସି ଶିକ୍ଷା ନାହିଁ, ଅଶ୍ଳୀଳତା ନାହିଁ କିମ୍ବା ଏପରି କୌଣସି ଶିକ୍ଷା ନାହିଁ ଯାହାକି ସଦ୍ୟ ପ୍ରମାଣିତ ବୈଜ୍ଞାନିକ ତଥ୍ୟର ପରିପନ୍ଥୀ । ଯେହେତୁ ଏହା ଈଶ୍ୱରଙ୍କର ଅନ୍ତିମ ପ୍ରକାଶନ, ସ୍ୱୟଂ ଈଶ୍ୱର ଏହାର ସୁରକ୍ଷା ପାଇଁ ଅଙ୍ଗୀକାରବଦ୍ଧ । ସୁତରାଂ ଈଶ୍ୱର କୁର୍‌ଆନରେ ଘୋଷଣା କରିଛନ୍ତି :

"ଆମ୍ଭେ ହିଁ ଏହି କୁର୍‌ଆନକୁ ଅବତୀର୍ଣ୍ଣ କରିଅଛୁ ଏବଂ ସ୍ୱୟଂ ଆମ୍ଭେ ହିଁ ଏହାର ସଂରକ୍ଷକ ।"

କୁର୍‌ଆନ ୧୫ : ୯

ଚଉଦଶହ ବର୍ଷ ହେଲା କୁର୍‌ଆନର ବିନ୍ଦୁବିସର୍ଗ ମଧ୍ୟ ପରିବର୍ତ୍ତନ ହୋଇନାହିଁ କି ଭବିଷ୍ୟତରେ ମଧ୍ୟ ହେବା ସମ୍ଭବ ନୁହେଁ । ତେଣୁ ଏହା ମନୁଷ୍ୟକୁ ପଥଭ୍ରଷ୍ଟ କରିବ ନାହିଁ ।



ଜଣେ ପୁତ୍ର ଯେପରି ପିତାଙ୍କର ସମସ୍ତ ପତ୍ରଗୁଡ଼ିକୁ ବିଶ୍ୱାସ କରେ; କିନ୍ତୁ ସଦ୍ୟ ପ୍ରାପ୍ତ ପତ୍ରର ଆଦେଶର ପାଳନ କରିଥାଏ, ସେହିପରି ଜଣେ ମୁସଲମାନ ଈଶ୍ୱରଙ୍କର ସମସ୍ତ ଦିବ୍ୟଗ୍ରନ୍ଥଗୁଡ଼ିକୁ ବିଶ୍ୱାସ କରେ; କିନ୍ତୁ ଅନ୍ତିମ ଆଦେଶ ପାଳନ କରିଥାଏ । ଯେପରି ଜଣେ ସରକାରୀ କର୍ମଚାରୀ ତା' ଚାକିରି ଜୀବନରେ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିବା ସମସ୍ତ ପଦାଧିକାରୀଙ୍କୁ ଉଚିତ୍ ସମ୍ମାନ ପ୍ରଦର୍ଶନ କରେ; କିନ୍ତୁ କେବଳ ତତ୍କାଳୀନ ଅଧିକାରୀଙ୍କ ଆଦେଶ ପାଳନ କରିବା ନିଜ କର୍ତ୍ତବ୍ୟ ମନେକରେ, ସେହିପରି ଜଣେ ମୁସଲମାନ ଭକ୍ତ ଈଶ୍ୱରଙ୍କ ସମସ୍ତ ବାର୍ତ୍ତାବହଙ୍କର ସମ୍ମାନ କରେ; କିନ୍ତୁ ଅନ୍ତିମ ବାର୍ତ୍ତାବହ ମହାମାନ୍ୟ ମୁହମ୍ମଦଙ୍କ ଆଦେଶ ପାଳନ କରିବା ଯଥାର୍ଥ ମନେ କରେ ।



+ 'The Bible, The Quran and Science' P-125

# ନିର୍ବାଚିତ ପୁସ୍ତକ

| | | |
|---|---|---|
| ୧. | ପବିତ୍ର କୁର୍‌ଆନ | : ଇଂରାଜୀ ଅନୁବାଦ—ଅବ୍‌ଦୁଲ୍ଲାହ୍ ୟୁସୁଫ ଅଲି |
| ୨. | ସହୀ ଅଲ୍-ବୁଖାରୀ | : ଇଂରାଜୀ ଅନୁବାଦ—ଡକ୍ଟର ମହମ୍ମଦ ମହସିନ୍ ଖାନ୍<br>ଇସ୍‌ଲାମିକ୍ ବିଶ୍ୱବିଦ୍ୟାଳୟ,<br>ଅଲ୍-ମଦିନା ମନୱ୍ୱରା (ସାଉଦି ଆରବ) |
| ୩. | ସହୀ ମୁସଲିମ | : ଇଂରାଜୀ ଅନୁବାଦ—ଅବଦୁଲ୍ ହମିଦ ସିଦ୍ଦିକୀ<br>ପ୍ରକାଶକ—ଇଣ୍ଟରନ୍ୟାସନାଲ ଇସ୍‌ଲାମିକ୍ ପବ୍ଲିସିଂ ହାଉସ୍<br>ପୋଷ୍ଟବକ୍ସ-୫୫୧୯୫, ରିୟାଦ-୧୧୫୩୪<br>ସାଉଦି ଆରବ |
| ୪. | ଜାମି<br>ଅତ୍-ତିରମିଜୀ | : ଇଂରାଜୀ ଅନୁବାଦ—ଅବୁ ଖଲିଲ, ଆମେରିକା<br>ପ୍ରକାଶକ—ମକତବା ଦାରୁସ୍-ସଲାମ ପବ୍ଲିକେଶନ୍<br>ରିୟାଦ, ସାଉଦି ଆରବ |
| ୫. | ପବିତ୍ର ବାଇବଲ | : ପ୍ରକାଶକ—ବାଇବଲ ସୋସାଇଟି ଅଫ୍ ଇଣ୍ଡିଆ<br>ମହାତ୍ମା ଗାନ୍ଧୀ ରୋଡ୍,<br>ବାଙ୍ଗାଲୋର - ୫୬୦ ୦୦୧ |
| ୬. | ଋଗବେଦ | : ଭାଷ୍ୟ—ମହର୍ଷି ଦୟାନନ୍ଦ ସରସ୍ୱତୀ<br>ଓଡ଼ିଆ ଅନୁବାଦ—ଶ୍ରୀ ମଧୁସୂଦନ ମହାନ୍ତି<br>ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର, କଟକ-୨ |
| ୭. | ଯଜୁର୍ବେଦ | : ଭାଷ୍ୟ—ମହର୍ଷି ଦୟାନନ୍ଦ ସରସ୍ୱତୀ<br>ଓଡ଼ିଆ ଅନୁବାଦ—ଶ୍ରୀ ମଧୁସୂଦନ ମହାନ୍ତି<br>ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର, କଟକ-୨ |
| ୮. | ମନୁ ସଂହିତା ବା<br>ମନୁ ସ୍ମୃତି | : ଶ୍ରୀରାମ ଶଙ୍କର ରାୟ<br>ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର, କଟକ-୨ |
| ୯. | **The 100 : A ranking of the Most Influential Persons in History** | : ମାଇକେଲ ଏଚ୍. ହାର୍ଟ, ଆମେରିକା<br>ପ୍ରକାଶକ—ମୀରା ପବ୍ଲିକେଶନ୍,<br>ଚେନ୍ନାଇ - ୬୦୦ ୦୪୦ |

୧୦. **Muhammed- The Prophet of Islam** : କେ. ଏସ୍. ରାମକ୍ରିଷ୍ଣା ରାଓ
ପ୍ରକାଶକ—ମୀରା ପବ୍ଲିକେଶନ୍
ଚେନ୍ନାଇ - ୬୦୦ ୦୪୦

୧୧. **Muhammad in Hindu Scriptures** : ଡକ୍ଟର ବେଦପ୍ରକାଶ ଉପାଧ୍ୟାୟ
ଇଂରାଜୀ ଅନୁବାଦ—ମହମ୍ମଦ ଆଲମଗୀର୍
ପ୍ରକାଶକ—ଇସ୍‌ଲାମିକ ବୁକ୍ ସର୍ଭିସ୍
ଦରିୟାଗଞ୍ଜ, ନୂଆଦିଲ୍ଲୀ - ୧୧୦ ୦୦୨

୧୨. **Muhammad in Parsi, Hindu & Budhist Scriptures** : ଏ.ଏଚ୍. ବିଦ୍ୟାର୍ଥୀ ଏବଂ ୟୁ. ଅଲି
ପ୍ରକାଶକ—ଇସ୍‌ଲାମିକ ବୁକ୍ ସର୍ଭିସ୍
ଦରିୟାଗଞ୍ଜ, ନୂଆଦିଲ୍ଲୀ - ୧୧୦ ୦୦୨

୧୩. **The Bible, the Quran & Science** : ମରିସ୍ ବୁକାଏ
ପ୍ରକାଶକ—ଇଦାରା ଇଶାତେ ଦିନିୟାତ
୧୬୮/୨, ଝା ହାଉସ୍, ହଜରତ୍ ନିଜାମୁଦ୍ଦିନ
ନୂଆଦିଲ୍ଲୀ - ୧୧୦ ୦୧୩

୧୪. **Similarities between Hinduism & Islam** : ଡକ୍ଟର ଜାକିର ନାଏକ
ଆଦମ୍ ପବ୍ଲିଶର୍ସ ଏଣ୍ଡ୍ ଡିଷ୍ଟ୍ରିବ୍ୟୁଟର୍ସ
୧୫୪୨, ପଟୌଦି ହାଉସ୍
ଦରିୟାଗଞ୍ଜ, ନୂଆଦିଲ୍ଲୀ-୧୧୦ ୦୦୨

୧୫. ସନାତନ ଧର୍ମର ସାରକଥା : ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ
ପ୍ରକାଶକ—ମନୋଜ କୁମାର ମହାପାତ୍ର
ଗ୍ରନ୍ଥ ମନ୍ଦିର, ବିନୋଦବିହାରୀ, କଟକ

୧୬. ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ : ସଂଗ୍ରାହକ—ଗୋପାଳଚନ୍ଦ୍ର ପ୍ରହରାଜ (୧୮୭୪-୧୯୪୫)
ପ୍ରକାଶକ—ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ, ଭୌମ ନଗର,
ଭୁବନେଶ୍ୱର-୭୫୧ ୦୦୧

୧୭. ଅନ୍ତିମ ସଂଦେଷ୍ଟା କବ୍, କୌନ୍ ଔର୍ କାହାଁ (ହିନ୍ଦୀ) : ଏମ୍.ଏମ୍. ସରୱର୍ ଫାରୁକୀ ନଦୱି
ପ୍ରକାଶକ—ଜମିଅତ୍ ପୟାମେ ଅମ୍ନ
ଟାଗୋର ମାର୍ଗ, ଡାଲିଗଂଜ, ଲକ୍ଷ୍ନୌ - ୨୦

୧୮. ୱେବ୍‌ସାଇଟ୍ : **www.irf.net**




ଲେଖକଙ୍କର ଅନ୍ୟତମ କୃତି

'ଇସ୍‌ଲାମ ଏବଂ ମାନବିକତା'

ସମ୍ପର୍କରେ ଦୁଇପଦ....

- ଲେଖକ ଏହି ପୁସ୍ତକରେ ପ୍ରମାଣିତ କରିବାକୁ ଉଦ୍ୟମ କରିଛନ୍ତି ଯେ, ଧର୍ମ ଈଶ୍ୱରଦତ୍ତ ଏକ ଜୀବନମାର୍ଗ ଯାହାକି ସମଗ୍ର ମାନବଜାତିକୁ ଏକ ପରିବାରରେ ପରିଣତ କରିବା ପାଇଁ ଉଦ୍ଦିଷ୍ଟ । ବେଦ, ବାଇବଲ ଓ କୁର୍‌ଆନକୁ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରି ଲେଖକ ଏହି ପୁସ୍ତକରେ ଉଦାହରଣ ଦେଇ ଇସ୍‌ଲାମ ଏକ ମାନବୀୟ ଧର୍ମ ବୋଲି ସାବ୍ୟସ୍ତ କରିଛନ୍ତି । ମାନବିକତା ଦୃଷ୍ଟିଭଙ୍ଗୀରେ ଇସ୍‌ଲାମର ଆଲୋଚନା ଓଡ଼ିଆ ସାହିତ୍ୟକୁ ଶକୀଲ ବାବୁଙ୍କର ଏକ ଉଲ୍ଲେଖନୀୟ ଅବଦାନ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।



—ଧରିତ୍ରୀ

- ଇସ୍‌ଲାମ ଧର୍ମର ମାନ୍ୟତା ସ୍ୱତନ୍ତ୍ର । ଏହା କେବଳ ମାନବତାବାଦର ପ୍ରଚାର କରେ ନାହିଁ । ବିଶ୍ୱ ଭ୍ରାତୃତ୍ୱବୋଧ, ଐକ୍ୟ, ସଂହତି, ଦୟା, ପ୍ରେମ, ପରୋପକାରର ଉଦ୍‌ଘୋଷକ । ମାନବୀୟ ମୂଲ୍ୟବୋଧ ଆଧାରିତ ପବିତ୍ର ଇସ୍‌ଲାମ ଧର୍ମ ଓ ମାନବିକତା ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ଏହାର ସାରତତ୍ତ୍ୱ ତଥା ଏହି ଧର୍ମର ନୀତିନିୟମ ଉପରେ ଲେଖକ ଆଲୋକପାତ କରିଛନ୍ତି ପୁସ୍ତକଟିରେ ।

—ସମାଜ

- ଲେଖକ ଯେଉଁ ପ୍ରଶ୍ନଗୁଡ଼ିକ ଉତ୍‌ଥାପିତ କରିଛନ୍ତି, ତାହାର ଯଥାର୍ଥ ଉତ୍ତର ମଧ୍ୟ ସେ ଦେଇଛନ୍ତି । ଏ ପୁସ୍ତକଟି ହିନ୍ଦୁ, ଖ୍ରୀଷ୍ଟିୟାନ ଓ ମୁସଲମାନମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି କରିବ ବୋଲି ମୋର ବିଶ୍ୱାସ ।

—ଡକ୍ଟର ଉମେଶ ପତ୍ରୀ

ପ୍ରାକ୍ତନ ପ୍ରାଧ୍ୟାପକ, ରେଭେନ୍ସା କଲେଜ ଓ ବିଜେବି କଲେଜ

♦ ଶକୀଲ ଅହମ୍ମଦଙ୍କ ଲିଖିତ 'ଇସ୍‌ଲାମ ଏବଂ ମାନବିକତା' ଗ୍ରନ୍ଥ ପାଠ କରି ଅତ୍ୟନ୍ତ ସୁଖୀ ହେଲି । ବିଭିନ୍ନ ଧର୍ମମତ ବିଷୟରେ ଅନେକ ସମୟରେ ଯେଉଁ ଭ୍ରାନ୍ତ ଧାରଣା ଅଜ୍ଞାନତାବଶତଃ ସୃଷ୍ଟି ହୋଇଥାଏ, ଶ୍ରୀ ଅହମଦ ତାହାର ଉପଯୁକ୍ତ ସମାଧାନ ପାଇଁ ଚେଷ୍ଟିତ ହୋଇଛନ୍ତି ।

—ଶ୍ରୀ ପଠାଣି ପଟ୍ଟନାୟକ,
ପ୍ରାକ୍ତନ ଅଧକ୍ଷ, ଖ୍ରୀଷ୍ଟ ମହାବିଦ୍ୟାଳୟ

♦ ଇସ୍‌ଲାମ ଓ ମାନବିକତା ବିଷୟରେ ଲେଖକ ଏକ ଗବେଷଣାପୂର୍ଣ୍ଣ ସମୀକ୍ଷାର ଶୁଭାରମ୍ଭ କରିଛନ୍ତି । ଏକଥା ଯୁକ୍ତିସଙ୍ଗତ, ତେଣୁ ବହୁ ଲୋକଙ୍କ ଦ୍ୱାରା ଆଦୃତ ।

—ଶ୍ରୀ ଶ୍ୟାମସୁନ୍ଦର ଦାସ,
ସଭାପତି କ୍ଲାପ, କଟକ

♦ ଯଦିଓ ବହୁ ମୁସଲମାନ କବି ଓ ଲେଖକ ଓଡ଼ିଆ ସାହିତ୍ୟରେ କୀର୍ତ୍ତିସ୍ଥାପନ କରିଛନ୍ତି, ତଥାପି ଇସ୍‌ଲାମର ଆଭିମୁଖ୍ୟକୁ ପାଠକମାନଙ୍କ ଆଗରେ ସ୍ୱଚ୍ଛ ଶବ୍ଦରେ ରଖିବାରେ ଶକୀଲ୍ ଅହମଦଙ୍କ ପ୍ରଚେଷ୍ଟା ପ୍ରଶଂସନୀୟ ।

—ଡକ୍ଟର ଆର୍ଯ୍ୟକୁମାର ହର୍ଷବର୍ଦ୍ଧନ
ଅଧାପକ, ଖ୍ରୀଷ୍ଟ ମହାବିଦ୍ୟାଳୟ

♦ ଶକୀଲ୍ ଭାଇଙ୍କର ଏହି ମହାନ୍ କାର୍ଯ୍ୟକୁ ଈଶ୍ୱର ସର୍ବଦା ଆଶୀର୍ବାଦ କରନ୍ତୁ ଓ ଇସ୍‌ଲାମ ଧର୍ମ ପ୍ରତି ଥିବା ଭ୍ରାନ୍ତ ଧାରଣାକୁ ଜନମାନସରୁ ବିନାଶ କରି ଏହି ପୁସ୍ତକକୁ ସାମ୍ପ୍ରଦାୟିକ ସଦ୍‌ଭାବ ନିମନ୍ତେ ବ୍ୟବହାର କରନ୍ତୁ ବୋଲି ମୁଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି । ଆମେନ୍ ।

—ଶ୍ରୀ ବସନ୍ତ କୁମାର ନନ୍ଦ
ସେକ୍ରେଟାରୀ, ଗ୍ରେସ୍ ଫେଲୋସିପ୍ ଏଣ୍ଡ୍ ଚର୍ଚ୍ଚ ଅଫ୍ ଗଡ୍, ଭୁବନେଶ୍ୱର

♦ ଏହି ଧର୍ମ ପ୍ରତି ଯେଉଁ ଭ୍ରମଧାରଣା ଲୋକମାନଙ୍କ ମଧ୍ୟରେ ଅଛି ତାକୁ ଦୂର କରିବା ପାଇଁ ଭାଇ ଶକୀଲ ଅହମଦ ତାଙ୍କର ଏହି ପୁସ୍ତକରେ ଯେଉଁ ଉଦ୍ୟମ କରିଛନ୍ତି, ତାହା ପ୍ରଶଂସନୀୟ ।

—ଅଧାପକ ବଂଶୀଧର ଦାସ୍
ସମ୍ବିଧାନବିତ୍ ଓ ଗ୍ରନ୍ଥକାର

**ଧରିତ୍ରୀ**
DHARITRI.COM

ଇସ୍‌ଲାମ୍ ଧର୍ମ ସମ୍ପର୍କରେ ଅନେକଙ୍କ ମନରେ ରହିଥିବା ଭ୍ରାନ୍ତ ଧାରଣାକୁ ଦୂର କରିବା ପାଇଁ ଲେଖକ ଏହା ଉପରେ ଆଲୋଚନା କରିଆସିଛନ୍ତି । ପୂର୍ବରୁ 'ଇସ୍‌ଲାମ୍ ଓ ମାନବିକତା' ତଥା 'ବେଦ, ବାଇବଲ୍ ଏବଂ କୁର୍‌ଆନ୍‌ରେ ଏକେଶ୍ୱରବାଦ' ଶୀର୍ଷକରେ ଦୁଇଟି ଆଲୋଚନା ପୁସ୍ତକ ପ୍ରକାଶ କରିସାରିଛନ୍ତି । 'ଇସ୍‌ଲାମ୍ ପରିଚୟ' ତାଙ୍କର ତୃତୀୟ ପ୍ରୟାସ । ଏଥିରେ ସେ ସ୍ପଷ୍ଟ କରିଦେବା ପାଇଁ ଚାହିଁଛନ୍ତି ଯେ, ଇସ୍‌ଲାମ୍ ଏକ ଅମାନବୀୟ ଧର୍ମ ନୁହେଁ, ମହାମାନ୍ୟ ମୁହମ୍ମଦ ଏବଂ କୁର୍‌ଆନ୍ ପୂର୍ବ ଦିବ୍ୟଶିକ୍ଷାଗୁଡ଼ିକର ପୁନଃସ୍ଥାପନ କରିବାକୁ ଯେଉଁ ପ୍ରୟାସ କରିଛନ୍ତି, ତାହାହିଁ ଇସ୍‌ଲାମ୍ । ପୁସ୍ତକରେ ସେ ଇସ୍‌ଲାମ୍ ତତ୍ତ୍ୱ ଓ ତଥ୍ୟର ତର୍ଜମା କରିଛନ୍ତି ।

**ସମାଜ**
The Samaja

ଇସ୍‌ଲାମ୍ ଧର୍ମର ସ୍ୱରୂପ ସମ୍ପର୍କରେ ମୁସଲମାନ ଧର୍ମାବଲମ୍ବୀଙ୍କ ସହ ଅନ୍ୟ ଧର୍ମାବଲମ୍ବୀଙ୍କୁ ଅବଗତ କରାଇବା ସହ ଏହାର ଆଭିମୁଖ୍ୟ, ମୌଳିକତା ପ୍ରତିପାଦନ ନିମିତ୍ତ ଏହା ଏକ ଗବେଷଣାତ୍ମକ ପୁସ୍ତକ । ଇସ୍‌ଲାମ୍ ଧର୍ମଗ୍ରନ୍ଥ କୁର୍‌ଆନ୍‌ରୁ ବହୁ ଉପାଦେୟ ଉଦ୍ଧୃତି ଦେଇ ଲେଖକ ଇସ୍‌ଲାମ ଧର୍ମର ବିଶ୍ୱମୁଖିନତା ଓ ଏହାର ମାନବବାଦୀ ତଥା ଉଦାରବାଦୀ ଆଭିମୁଖ୍ୟକୁ ବିଶ୍ଳେଷଣ କରିଛନ୍ତି । ମୁସଲମାନମାନଙ୍କର ନୈତିକ ଓ ଆଧ୍ୟାତ୍ମିକ ନିଷ୍ଠାର ମୂଲ୍ୟାୟନ ସହ ଶ୍ରୀ ଅହମ୍ମଦ ଇସ୍‌ଲାମ୍ ଧର୍ମର ମହାନ୍ ଭାବାଦର୍ଶ ଉପରେ ଆଲୋକପାତ କରିଛନ୍ତି ।

**ଖବର**
KHABARA

ପୁସ୍ତକଟିରେ କୁର୍‌ଆନ୍, ଋଗ୍‌ବେଦ, ସହୀବୁଖାରୀ, ତିର୍‌ମିଜୀରୁ ଉଦ୍ଧୃତିମାନ ନେଇ ଧର୍ମ ଯୁଗେ ଯୁଗେ ମାନବିକତାର ଜୟଗାନ କରିଛି ବୋଲି ପ୍ରମାଣ କରିଛନ୍ତି ଲେଖକ । ଧର୍ମମତ ବିଶେଷ କରି ଇସ୍‌ଲାମ୍ ଧର୍ମ ସମ୍ପର୍କରେ ରହିଥିବା ଧାରଣାମାନ ଦୂର କରିବା ଦିଗରେ ପୁସ୍ତକଟି ନିଶ୍ଚିତ ରୂପେ ସହାୟକ ହେବ । ଇସ୍‌ଲାମର ନୀତିନିୟମ ଉପରେ ଲେଖକ ଆଲୋକପାତ କରି ସାମ୍ପ୍ରଦାୟିକ ସଦ୍‌ଭାବ ସୃଷ୍ଟି କ୍ଷେତ୍ରରେ ଏହାର ଦୃଷ୍ଟିକୋଣ ଅଧିକ ସ୍ପଷ୍ଟ ହୋଇଛି । ପୁସ୍ତକଟି ନିଶ୍ଚିତ ରୂପେ ସଂଗ୍ରହଣୀୟ ।

SAMBAD
**ସମ୍ବାଦ**

ଇସ୍‌ଲାମ୍ ଧର୍ମକୁ ନେଇ ଯଦି କାହା ମନରେ କିଛି ଭ୍ରାନ୍ତ ଧାରଣା ଥାଏ, ତେବେ ତାହା ଦୂର କରିପାରିବ ଏହି ପୁସ୍ତକ । ମୁସଲମାନ୍ ଏବଂ ଅଣମୁସଲମାନ୍ ଉଭୟଙ୍କ ପାଇଁ ଏହି ପୁସ୍ତକଟି ଉପଯୋଗୀ । ଇସ୍‌ଲାମ୍ କଣ, ଏହାର ନୀତିନିୟମ, ଧର୍ମର ବାସ୍ତବିକତା ଆଦି ଉପରେ ଲେଖକ ଆଲୋକପାତ କରିଛନ୍ତି । ଧର୍ମର କେତେକ ସିଦ୍ଧାନ୍ତକୁ ବୁଝାଇବା ପାଇଁ କୁର୍‌ଆନ୍ ସହ ଲେଖକ ବେଦ ଏବଂ ବାଇବଲ୍‌ର ସହାୟତା ମଧ୍ୟ ନେଇଥିବା ଜଣାଯାଏ । ଏହି ପୁସ୍ତକଟିରେ ଏକ ମାନବବାଦୀ ଦୃଷ୍ଟିଭଙ୍ଗୀ ଧାର୍ମିକ ଉଦାହରଣ ମାଧ୍ୟମରେ ଲେଖକ ସ୍ପଷ୍ଟ କରିଛନ୍ତି ।

**ପ୍ରଗତିବାଦୀ**
PRAGATIVADI

ସମାଜରେ ପ୍ରସାର ଲାଭ କରୁଥିବା ହିଂସା, ଆତଙ୍କ ପାଇଁ ବିଶେଷ କରି ଇସ୍‌ଲାମ୍ ଧର୍ମକୁ ଦାୟୀ କରାଯାଉଛି । ଏହି ଧର୍ମ ବିଷୟରେ ନାନା ପ୍ରକାର ଭ୍ରମଧାରଣା ଲୋକମାନଙ୍କ ମନରେ ସୃଷ୍ଟି ହୋଇଛି । ଏହି ଭ୍ରମଧାରଣା ଦୂର କରିବା ପାଇଁ ଲେଖକ ଶକୀଲ ଅହମ୍ମଦ ତାଙ୍କ ପୁସ୍ତକ 'ଇସ୍‌ଲାମ୍ ପରିଚୟ'ରେ ଇସ୍‌ଲାମ୍ ଧର୍ମ ବିଷୟରେ ବହୁ ତଥ୍ୟ ସନ୍ନିବେଶିତ କରିଛନ୍ତି । ଏହି ପୁସ୍ତକଟି ଏକ ଭିନ୍ନ ସ୍ୱାଦର ଇସ୍‌ଲାମୀ ସାହିତ୍ୟ । ତେବେ ପୁସ୍ତକଟି କେବଳ ମୁସଲମାନମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ, ଅନ୍ୟ ଧର୍ମାବଲମ୍ବୀ ଭାଇଭଉଣୀମାନଙ୍କୁ ମଧ୍ୟ ସମାନ ଭାବରେ ଇସ୍‌ଲାମ ସହ ପରିଚିତ କରାଇବା ଏହାର ଉଦ୍ଦେଶ୍ୟ । ଇସ୍‌ଲାମ୍ ଶବ୍ଦର ପ୍ରକୃତ ଅର୍ଥ ବୁଝି ସମାଜରେ ସ୍ନେହ, ଶାନ୍ତି ଓ ସଦ୍‌ଭାବନା ପ୍ରତିଷ୍ଠା କରିବାକୁ ସେ ପୁସ୍ତକ ମାଧ୍ୟମରେ ସମସ୍ତଙ୍କୁ ଆହ୍ୱାନ ଦେଇଛନ୍ତି ।